# ସ୍ମରଣିକା



୧୫ଶ ଗଂଜାମ ଜିଲ୍ଲା ସମ୍ମିଳନୀ

## ଭାରତୀୟ କମ୍ୟୁନିଷ୍ଟ ପାର୍ଟି

କମ୍ରେଡ୍ ହରହର ଦାଶ ନଗର, ଜଗସୂର୍ଯ୍ୟନଗର

୧୧, ୧୨ ଓ ୧୩ ଅଗଷ୍ଟ ୧୯୯୫

Digitized by srujanika@gmail.com

୧-୪ଶ ଗଂଜାମ ଜିଲ୍ଲା ସମ୍ମିଳନୀ

# ଭାରତୀୟ କମ୍ୟୁନିଷ୍ଟ ପାର୍ଟି

କମ୍ରେଡ୍ ହରିହର ଦାଶ ନଗର

୧୧, ୧୨ ଓ ୧୩ ଅଗଷ୍ଟ ୧୯୯୫—କବିସୂର୍ଯ୍ୟନଗର

## ଅଭ୍ୟର୍ଥନା ସମିତି

**ଚେୟାରମେନ୍** — ସାଥୀ ଏମ୍. ଜଗନ୍ନାଥ ସ୍ୱାମୀ

**ଭାଇସ୍ ଚେୟାରମେନ୍** — ସାଥୀ ସୁଦର୍ଶନ ସ୍ୱାଇଁ
ସାଥୀ ଲୁଚି ରେଡ଼ି
ସାଥୀ ଅଶ୍ୱିନୀ ମିଶ୍ର
ସାଥୀ ନବକୃଷ୍ଣ ନାୟକ
ସାଥୀ ଶିବରାମ ସାହୁ

**ସଂପାଦକ** — ସାଥୀ ପ୍ରବୀଣ କୁମାର ଦାଶ

**ସହ-ସଂପାଦକ** — ସାଥୀ ପ୍ରତାପ ଚନ୍ଦ୍ର କର
ସାଥୀ ସନ୍ତୋଷ କୁମାର ପାଣିଗ୍ରାହୀ
ସାଥୀ ସତ୍ୟନାରାୟଣ ମହାପାତ୍ର
ସାଥୀ ମହନ୍ତର ସାହୁ

**କୋଷାଧ୍ୟକ୍ଷ** — ସାଥୀ ଅଜିତ୍ କୁମାର ଚୌଧୁରୀ

**ସଭ୍ୟ** — ଆସିକା, କବିସୂର୍ଯ୍ୟନଗର, ହିଞ୍ଜିଳି-ପୁରୁଷୋତ୍ତମପୁର ଓ
ପୋଲସରା ଜୋନ୍‌ର ସମସ୍ତ ଆଞ୍ଚଳିକ କମିଟି ସଭ୍ୟ ।

Digitized by srujanika@gmail.com




ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପଞ୍ଚଦଶ ଗଂଜାମ ଜିଲ୍ଲା ସମ୍ମିଳନୀ, କମ୍ରେଡ୍ ହରିହର ଦାଶ ନଗର (କବିସୂର୍ଯ୍ୟନଗର) ଠାରେ ୧୧, ୧୨ ଓ ୧୩ ଅଗଷ୍ଟ ୧୯୯୪, ଅନୁଷ୍ଠିତ ହେଉଛି । ଏହି ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶନ ପାଇଁ ନିଷ୍ପତ୍ତି ହୋଇଛି । ସମ୍ମିଳନୀ, ସମାବେଶ ହେଲେ ସ୍ମରଣିକା ପ୍ରକାଶ ପାଏ । କିଛି ପ୍ରବନ୍ଧ, କିଛି ଇତିହାସ, କିଛି କବିତା ଓ କିଛି ଗଳ୍ପ ନେଇ ସ୍ମରଣିକା ଛପା ଯାଇଥାଏ ଗତାନୁଗତିକ ଧାରାରେ ।

କିନ୍ତୁ ଜିଲ୍ଲା ପାର୍ଟି ଏଥର ସ୍ମରଣିକା ପ୍ରକାଶନର ରୂପରେଖ ପରିବର୍ତ୍ତନ କରି ଏକ ନୂତନ ଶୈଳୀର ସ୍ମରଣିକା ପ୍ରକାଶ ପାଇଁ ନିଷ୍ପତ୍ତି କରିଛି । ଯେଉଁ ପ୍ରୟାତ ସାଥୀମାନେ ପ୍ରାତ ସ୍ମରଣୀୟ, ଯେଉଁମାନଙ୍କ ତ୍ୟାଗ ଓ କର୍ତ୍ତବ୍ୟ ନିଷ୍ଠା ଫଳରେ ଗଂଜାମ ଜିଲ୍ଲା ପାର୍ଟି ଗଠନ ହୋଇଛି । ଯେଉଁମାନଙ୍କ ବଳିଷ୍ଠ ନେତୃତ୍ୱରେ ଶତ ଶତ ଗଣ ସଂଗ୍ରାମ ସଂଗଠିତ ହୋଇଛି ସେହି ସାଥୀମାନଙ୍କ ଅମ୍ଳାନ ସ୍ମୃତିକୁ ସାଇତି ରଖିବା ପାଇଁ ଏହି ସ୍ମରଣିକା ମାଧ୍ୟମରେ କିଛିଟା ଉଦ୍ୟମ ହୋଇଛି ।

ସ୍ମରଣିକା ପ୍ରକାଶନରେ ସାଥୀ ବିଶ୍ୱନାଥ ସାହୁ, ସାଥୀ ଏମ୍. ଜଗନ୍ନାଥ ସ୍ୱାମୀ, ସାଥୀ ପ୍ରକାଶ ପାତ୍ର, ସାଥୀ ଦେବେନ୍ଦ୍ର ପଣ୍ଡା, ସାଥୀ ନାରାୟଣ ରେଡ୍ଡି, ସାଥୀ ଶମ୍ଭୁ ପଣ୍ଡା, ପ୍ରମୁଖଙ୍କ ସହଯୋଗ, ଲେଖା, ତଥ୍ୟ ପ୍ରଦାନ ଫଳରେ ସ୍ମରଣିକା ଆତ୍ମପ୍ରକାଶ କରିଛି ।

ସମୟର ସ୍ୱଳ୍ପତା ଯୋଗୁଁ ଜିଲ୍ଲାର ସମସ୍ତ ପ୍ରୟାତ ନେତୃତ୍ୱକାରୀ ସାଥୀମାନଙ୍କ ଜୀବନୀ ସଂଗ୍ରହ ଓ ପ୍ରକାଶନ ସମ୍ଭବପର ହୋଇ ପାରିନାହିଁ । ଭବିଷ୍ୟତରେ ଏହାର ପୂର୍ଣ୍ଣାଙ୍ଗ ସଂକଳନ କରାଯାଇପାରିଲେ ସାଥୀମାନଙ୍କ ପାଇଁ ପ୍ରେରଣାଦାୟକ ହେବ । ଏହାର ମୁଦ୍ରଣ ପାଇଁ ଅର୍ଣ୍ଣିକା ପ୍ରେସ୍‌ର ମାଲିକ ଓ କର୍ମଚାରୀଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ମୁଦ୍ରଣ ଜନିତ ତଥା ସଂପାଦନାଗତ ତ୍ରୁଟି ନିଶ୍ଚିତଭାବେ ରହି ଯାଇଥିବ । ସେଥିପାଇଁ କ୍ଷମା ପ୍ରାର୍ଥନା କରୁଛି ।

**ନିତ୍ୟାନନ୍ଦ ପ୍ରଧାନ**
ସଂପାଦକ

Digitized by srujanika@gmail.com

# ॥ ଗଂଜାମ ପାର୍ଟିର ବୈପ୍ଳବିକ ଉତ୍ତରାଧିକାର ॥

● ଗୋବିନ୍ଦ ଚନ୍ଦ୍ର ମହାନ୍ତି

ଗଂଜାମ ଜିଲ୍ଲା ସି. ପି. ଆଇର ପଞ୍ଚଦଶ ସମ୍ମିଳନୀ ଅନୁଷ୍ଠିତ ହେଉଛି । ନବାଗତ ପ୍ରତିନିଧି ସାଥୀମାନେ ପରିବର୍ତ୍ତିତ ଆନ୍ତର୍ଜାତୀୟ, ଜାତୀୟ ଏବଂ ରାଜ୍ୟର ରାଜନୈତିକ, ଅର୍ଥନୈତିକ, ସାମାଜିକ ସମସ୍ୟାଗୁଡ଼ିକର ବିଶ୍ଳେଷଣ, ଆଲୋଚନା କରିବେ । ଏହିସବୁ ସମସ୍ୟାର ମୁକାବିଲା କରିବା ଲାଗି ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ନିଜର ରାଜନୈତିକ କର୍ମକୌଶଳ ନିର୍ଦ୍ଧାରଣ କରିବେ । ସେଥିଲାଗି ପାର୍ଟିର ଏକମାତ୍ର ସଠିକ୍ ଅସ୍ତ୍ର ପାର୍ଟି ସଂଗଠନକୁ ଦୃଢ଼ରୁ ଦୃଢ଼ତର କରିବା ଲାଗି କର୍ମପନ୍ଥା ଗ୍ରହଣ କରିବେ ।

ଗଞ୍ଜାମ ପାର୍ଟି ସହିତ ପଚାଶ ବର୍ଷରୁ ଊର୍ଦ୍ଧ୍ୱ କାଳର ସମ୍ପର୍କ । ସେ ସମ୍ପର୍କ ମାନସିକ, ରାଜନୈତିକ ଓ ଶାରୀରିକ । ପାର୍ଟି ଜୀବନ କାଳରେ ଅସଂଖ୍ୟ ଥର ଗଞ୍ଜାମକୁ ଯାଇଛି । ଆୟୁକାଳର ଅନ୍ତତଃ ଦୁଇଶହ ଦିନ ପାର୍ଟି ଦପ୍ତରରେ, ଗଞ୍ଜାମର ଗାଁ ଗଣ୍ଡା, ପେଣ୍ଠ, ସହର ଓ ସମ୍ମିଳନୀ ଗୁଡ଼ିକରେ କଟାଇଥିବି । ଗଞ୍ଜାମର ରୈୟତ କୃଷି, ଛାତ୍ର,ଯୁବକ, ବୁଦ୍ଧିଜୀବୀ ଆଉ ପୁରୁଣାନୂଆ ସାଥୀମାନଙ୍କ ଗହଣରେ । ସେଥିଲାଗି ଗଞ୍ଜାମ ପାର୍ଟି ପ୍ରତି ମୋହ । ଅଧିକନ୍ତୁ ବ୍ରହ୍ମପୁର କାରାଗାରରେ ଗଞ୍ଜାମ ତଥା ଓଡ଼ିଶାର ଶତ ଶତ ସ୍ୱାଧୀନତା ସଂଗ୍ରାମୀଙ୍କ ସଙ୍ଗରେ ଚାରିବର୍ଷରୁ ଅଧିକ କାଳ କାରାଜୀବନ ବିତିଛି । ତା'ର ଅର୍ଥ ଜିଲ୍ଲାର ପାଣିପବନ, ତା'ର ଅନ୍ନଖାଇ ଗଞ୍ଜାମର ପ୍ରେମରେ ପଡ଼ିଯାଇଛି ।

ଅତୀତର ସ୍ମୃତି ପ୍ରଖାଳିଲା ବେଳେ ମନେ ପଡ଼େ ବିଶେଷତଃ ୧୯୪୪-୪୫ ସାଲ । ବିଧିବଦ୍ଧ ଭାବରେ ଗଞ୍ଜାମରେ କମ୍ୟୁନିଷ୍ଟ ପାର୍ଟିର ଆଦ୍ୟ ଅଙ୍କୁର ତାହାହିଁ ପରବର୍ତ୍ତୀକାଳରେ ହେଲା ଏକ ମହାଦ୍ରୁମ ସଦୃଶ । ଗଞ୍ଜାମ ପାର୍ଟିର ଯେଉଁମାନେ ଆଦ୍ୟପୁରୁଷ, ସେମାନଙ୍କୁ ପ୍ରଥମ ପିଢ଼ି ଧରିଲେ, ଆଜିର ସାଥୀମାନେ ୫୦ ବର୍ଷ ଭିତରେ ତୃତୀୟ ପିଢ଼ିର । ପ୍ରଥମ ପିଢ଼ିର ଆଉ ଆଙ୍ଗୁଠି ଗଣତା କେତେଜଣ ଅଛନ୍ତି । ମଝି ପିଢ଼ିର ଅନେକ ସଂଗ୍ରାମୀ ଯୋଦ୍ଧା ବି ଚାଲିଗଲେଣି । ଯେତେକ ଜୀବିତ ଓ କର୍ମତତ୍ପର ସେମାନେ ମଧ୍ୟ ସଂଖ୍ୟାରେ ଆଙ୍ଗୁଠି ଗଣତା । ତୃତୀୟ ପିଢ଼ିର ଉଦୟମାନ ଯୁବକ ସାଥୀମାନଙ୍କ ହାତରେ ଗଞ୍ଜାମ ପାର୍ଟିର ସମସ୍ତ ଐତିହ୍ୟ, ପରମ୍ପରା, ବର୍ତ୍ତମାନ ଏବଂ ଭବିଷ୍ୟତ ନ୍ୟସ୍ତ ।

ମନେ ପଡ଼େ ୧୯୪୩ ଦୁର୍ଭିକ୍ଷ । ଗଞ୍ଜାମର ପାଲୁର ଓ ଅନ୍ୟାନ୍ୟ ଅଞ୍ଚଳରେ ଦୁର୍ଭିକ୍ଷଜନିତ ମରଣର ପଟାଳି । ବ୍ରିଟିଶ ଶାସନ, ଜେଲମୁକ୍ତ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ପ୍ରତିଷ୍ଠାତା ଓ ପ୍ରଥମ ପାର୍ଟି ସମ୍ପାଦକ ସାଥୀ ଭଗବତୀ ଚରଣ ପାଣିଗ୍ରାହୀଙ୍କର ଦୁର୍ଭିକ୍ଷ ଅଞ୍ଚଳଗ୍ରସ୍ତ, ପୀଡ଼ିତଙ୍କ ସେବା—ବହି ଆଣିଲେ ବିଶୁଚିକାର ଜୀବାଣୁ । ୧୯୪୩ ଅକ୍ଟୋବର ୨୩ରେ ସେ ଚାଲିଗଲେ । ସେତେବେଳେ ଗଞ୍ଜାମର କମ୍ୟୁନିଷ୍ଟ ପାର୍ଟି ଗଢ଼ା ହୋଇନଥାଏ । ମନେ ହୁଏ ପରବର୍ତ୍ତୀ କାଳରେ ଗଞ୍ଜାମରେ ଯେଉଁମାନେ କମ୍ୟୁନିଷ୍ଟ ହେଲେ, ସେମାନେ ଯେପରି ରାଣଖାଇ ପଣ କଲେ ଯେ—ସାଥୀ ଭଗବତୀଙ୍କ ଋଣ ସେମାନେ ପରିଶୋଧ କରିବେ । ଗଢ଼ିବେ ଏକ ଶକ୍ତିଶାଳୀ ପାର୍ଟି । ତାହାହିଁ ହେଲା ।

୧୯୩୮-୩୯ ମସିହା । ସେତେବେଳେ କମ୍ୟୁନିଷ୍ଟ ମତବାଦ ପୋଷଣ କରୁଥିବା ନେତାମାନେ କଂଗ୍ରେସ ସୋସଲିଷ୍ଟ ପାର୍ଟିରେ ଥିଲେ । ତାଙ୍କ ନେତୃତ୍ୱରେ ଗଢ଼ା ହୋଇଥିଲା ପ୍ରାଦେଶିକ କୃଷକ ସଂଘ । ଅତି ମାମୁଲି ସଂଗଠନ, ଦାବୀ ଦେଇ ସେତେବେଳେ କୃଷିଙ୍କ ଆନ୍ଦୋଳନ । ବେଠି-ବେଗାରୀ, ଜମିଦାରୀ ଅତ୍ୟାଚାର ନିର୍ଯ୍ୟାତନା ବନ୍ଦ, କୃଷିର ନିଜ ବାଡ଼ ବଗିଚା ପୋଖରୀ ଗାଡ଼ିଆର ଫଳ ଓ ମାଛର ଅଧିକାର ବେଆଇନ ପାଉଣା ବନ୍ଦ । ତାହାହିଁ ମହା-ଉଦ୍ଦୀପନା ସୃଷ୍ଟି କରିଥିଲା । ବ୍ରିଟିଶ ସରକାର ଜମିଦାର, ମହାଜନଙ୍କ ଭିତରେ ଆତଙ୍କ ସୃଷ୍ଟି କରିଥିଲା । କଟକ, ପୁରୀ, ବାଲେଶ୍ୱରରେ ମୁଖ୍ୟତଃ ଏହି ଆନ୍ଦୋଳନ ନୂଆ ଉନ୍ମାଦନା ସୃଷ୍ଟି କରିଥିଲା । ଗଞ୍ଜାମରେ ଥାଏ ଜମିଦାରୀ ରଇତ ସଂଘ । ଏହି ରଇତ ସଂଘର ନେତାମାନଙ୍କ ସହିତ ପ୍ରାଦେଶିକ କୃଷକ ସଂଘର ନେତାମାନଙ୍କ ସମ୍ପର୍କ ସ୍ଥାପିତ ହୁଏ । କଂଗ୍ରେସ ସୋସାଲିଷ୍ଟ ପାର୍ଟିର ନେତା ନେବୀ ଆଉ ସେଥିରେ ଥିବା କମ୍ୟୁନିଷ୍ଟ ମନୋଭାବାପନ୍ନ ଯୁବକ ଗଞ୍ଜାମ ଆସୁଥିଲେ ।

ଗଞ୍ଜାମ ଜମିଦାରୀ ରଇତ ସଂଘର ତୁଙ୍ଗ ନେତୃତ୍ୱ ବଡ଼ ବଡ଼ ଜମିମାଲିକଙ୍କ ନେତୃତ୍ୱାଧୀନ । ପ୍ରାଦେଶିକ କୃଷକ ସଂଘ ଯେତେଦୂର ଆଗକୁ ଯିବ, ଜମିଦାରୀ ରଇତ ସଂଘର ନେତୃତ୍ୱ ସେତେ ବାଟ ଯିବନାହିଁ ।

୧୯୩୬ ଯାଏ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡ଼େନ୍ସିରେ ଥିବାରୁ ମାନ୍ଦ୍ରାଜ ଜମିଦାରୀ ରଇତ ସଂଘର ଶାଖା ରୂପେ ଗଞ୍ଜାମ ଜମିଦାରୀ ରଇତ ସଂଘ କାମ କରୁଥିଲା । ଏନ୍. ଜି. ରଙ୍ଗା ଆଉ ଆମ ରାଜ୍ୟର ବିଶ୍ୱନାଥ ଦାସ ପ୍ରମୁଖ ଏହାର ନେତୃତ୍ୱ ନେଉଥିଲେ ।

ପ୍ରାଦେଶିକ କୃଷକ ସଂଘ ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ ଗଞ୍ଜାମ ଜମିଦାରୀ ରଇତ ସଂଘର କୃଷିପ୍ରାଣ, ପ୍ରଗତିଶୀଳ କେତେ-

Digitized by srujanika@gmail.com

ଜଣ ଭୁଙ୍ଗ ନେତା ପ୍ରାଦେଶିକ କୃଷକ ସଭାର ନେତା ନେଶୀଙ୍କୁ ରଇତ ସମାବେଶକୁ ଆମନ୍ତ୍ରଣ କରନ୍ତି । ୧୯୩୮ କଂଗ୍ରେସ ମନ୍ତ୍ରୀ-ମଣ୍ଡଳ କାଳରେ ପ୍ରାଦେଶିକ କୃଷକ ସଭାରେ ଥାଇ ଏମ୍‌.ଏଲ୍‌.ଏ. ହୋଇଥିବା ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ ପ୍ରମୁଖଙ୍କର ଗଞ୍ଜାମ ଜମିଦାରୀ ରଇତ ସଭାର ନେତା ଓ ଏମ୍‌. ଏଲ୍‌. ଏ. ଗୋବିନ୍ଦ ପ୍ରଧାନଙ୍କ ରାଜନୈତିକ ସଖ୍ୟ ବଢ଼େ । ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ ପ୍ରମୁଖଙ୍କ ପ୍ରବର୍ତ୍ତନାରେ ଗଞ୍ଜାମ ଜମିଦାରୀ ରଇତ ସଭାକୁ ବୃହତ୍ତ ଜମି ମାଲିକଙ୍କ ସଂସ୍କାର-ବାଦୀ ନେତୃତ୍ୱ କବ୍‌ଜାରୁ ମୁକୁଳିବାକୁ ସଂକଳ୍ପ ନିଆଯାଏ । ଏହାର ତାତ୍ପର୍ଯ୍ୟ ଅନେକ । ଗଞ୍ଜାମ ଜମିଦାରୀ ରଇତ ସଭା ସଂଗଠନରୁ "ଜମିଦାରୀ" ଶବ୍ଦଟି ଉଠାଇ ତାହାକୁ ସେ କାଳରେ ପ୍ରାଦେଶିକ କୃଷକ ସଭାର ଅଙ୍ଗ କରାଯାଇ ନଥିଲେ ଗଞ୍ଜାମରେ ସକଳ ଗୋଷ୍ଠୀର ଅର୍ଥାତ୍ ଭୂମିହୀନ, କ୍ଷୁଦ୍ର-ମଧ୍ୟମ ଚାଷୀ ରଇତଙ୍କୁ ଚାଷୀ ଆନ୍ଦୋଳନର ପରିସର ଭିତରକୁ ଅଣା ଯାଇପାରି ନଥାନ୍ତା । ସେତିକି ନୁହେଁ ସାରା ଓଡ଼ିଶାରେ ଚମକ, ଚହଳ ସୃଷ୍ଟି କରିଥିବା ଗଞ୍ଜାମରେ ମୁସ୍ତାଦାରୀ, ଇନାମଦାରୀ ପରି ସାମନ୍ତବାଦୀ ପ୍ରଥା ଉଚ୍ଛେଦ ଆନ୍ଦୋଳନ, ହେତା ଖେଣ୍ଟା ଆନ୍ଦୋଳନ, ନଗଦ ସିସ୍ତୁ ଧାର୍ଯ୍ୟ ଆନ୍ଦୋଳନ ତୀବ୍ର ହୋଇ ନଥାନ୍ତା । ଅବର୍ଣ୍ଣନୀୟ ଦମନ, ହତ୍ୟା, ଜେଲକୁ ବେଖାତିର କରି ଶହ ଶହ ଗାଁର ସହସ୍ର ସହସ୍ର ରଇତ ପୁଅ, ବୁଢ଼ା ଟୋକା, ମହିଳା ମୁସ୍ତାଦାରୀ ପ୍ରଥା ବିଲୋପର ଲକ୍ଷ୍ୟ ହାସଲ ପାଇଁ ଲଢ଼େଇର ମଇଦାନରେ ଉଦ୍ଭୁରି ନଥାନ୍ତେ । ମୁସ୍ତାଦାରମାନଙ୍କ କୋଠ ଖଳାରୁ ଗଞ୍ଜାମର ରଇତ ନିଜ ଖଳାକୁ ଧାନ ବୋହି ଆଣି ମନ ଖୁସି କରିପାରି ନଥାନ୍ତେ । ସହସ୍ର ସହସ୍ର ଚାଷୀ ରଇତ ଘର ସାମ୍‌ନାରେ ତା ନିଜର ଖଣି ପଡ଼ିବା ସେ ଦେଖିପାରି ନଥାନ୍ତା ।

ଗଞ୍ଜାମର କମ୍ୟୁନିଷ୍ଟମାନେ ଏଇ ଆନ୍ଦୋଳନକୁ ପରବର୍ତ୍ତୀ ପର୍ଯ୍ୟାୟକୁ ନେଇଯାଇ ସାରା ପ୍ରଦେଶରୁ ଜମିଦାରୀ ପ୍ରଥା ବିଲୋପ, ଭାଗଚାଷୀ ଆନ୍ଦୋଳନ, ଭାଗଚାଷୀଙ୍କୁ ସତ୍ତ୍ୱ ପ୍ରଦାନ, ସର୍ବୋଚ୍ଚସୀମା ଧାର୍ଯ୍ୟ ଆନ୍ଦୋଳନ, ଉଦ୍‌ବୃତ୍ତ ଜମି, ବଞ୍ଜର ଜମି, ଅନାବାଦୀ ପତିତ ଜମି ଭୂମିହୀନ ଗରିବ ଚାଷୀଙ୍କୁ ବଣ୍ଟନ, ଘରଡ଼ିହ ଆନ୍ଦୋ-ଳନ ସହିତ ନଖକୁ ମାଉଁସ ପରି ଯୋଡ଼ିପାରି ନଥାନ୍ତା ।

ତେଣୁ ଓଡ଼ିଶାର ସାମନ୍ତବାଦୀ ଜମିଦାର, ସାହୁକାର, ଇନାମଦାର, ମୁସ୍ତାଦାର ବିଲୋପ ଆନ୍ଦୋଳନ ଓ ତା'ର ସାଫଲ୍ୟର ଉତ୍ତରାଧିକାରୀ ଆଜିର କମ୍ୟୁନିଷ୍ଟମାନେ । ସେମାନେ ସମୀକ୍ଷା କରନ୍ତୁ । ଆଜିର ପିଢ଼ି ରଇତ ପୁଅ, ଭୂମିହୀନଙ୍କ ପୁଅ ମୁତୁରି, ଭାଗଚାଷୀଙ୍କ ପୁଅ ମୁତୁରିଙ୍କ ଉପଲବ୍‌ଧିରେ ଏହି ଜୀବନୋତ୍ସର୍ଗମୂଳକ ସଂଗ୍ରାମ ରହିଛି ଓ ତାହାର ସଫଳତା ଯାହା ସେମାନେ ଭୋଗ କରୁଛନ୍ତି ତାହା ଅଛି କି ? ଆମେ ଅଣାଇ ପାରିଛୁ କି ?

ପୁଣି ମନେପଡ଼େ କିପରି ଗଞ୍ଜାମରେ କମ୍ୟୁନିଷ୍ଟ ପାର୍ଟିର ଜନ୍ମହେଲା । କିପରି ତାହାର ଶାଖାପ୍ରଶାଖା ଜିଲ୍ଲାସାରା ବିସ୍ତାରିତ ହେଲା । ସେତେବେଳର ମୁଷ୍ଟିମେୟ ସାଥୀ ଏବେ ବିରାଟ କମ୍ୟୁନିଷ୍ଟ ସାଥୀ ବାହିନୀ ଗଢ଼ିଛନ୍ତି । ସ୍ୱାଧୀନତା ସଂଗ୍ରାମରୁ ଜେଲ ଫେରନ୍ତା ଗୋବିନ୍ଦ ପ୍ରଧାନ, ହରିହର ଦାଶ ଏମିତି କେତେଜଣ ହେଲେ କମ୍ୟୁନିଷ୍ଟ । ଛାତ୍ର ସଂଘ ଆନ୍ଦୋଳନର ଜଣେ ଉଦୀୟମାନ ତାତ୍ତ୍ୱିକ ବିଜୟ ଚନ୍ଦ୍ର ଦାସ ମିଶି ପାର୍ଟି ଗଢ଼ିବାର ଉଦ୍ୟମ କଲେ । ଗାନ୍ଧୀ ନେତା ସାଧୁଚରଣ ମହାନ୍ତି ଓ କମ୍ୟୁନିଷ୍ଟ ନେତା ଗୁରୁଚରଣ ପଟ୍ଟନାୟକ ଗଞ୍ଜାମକୁ ନିଜର ଦୋଘରା କରିନେଲେ । ବାହାରିଲେ ଉଦୀୟମାନ ଗଣ୍ଡା ଗଣ୍ଡା ଛାତ୍ର ଯୁବକ ।

ଗଞ୍ଜାମରେ ପାର୍ଟି ସମଗ୍ର ଜିଲ୍ଲାର ବିଭିନ୍ନ ଶ୍ରମଜୀବୀ, ଖଟିଖିଆ ଶ୍ରେଣୀ, କ୍ଷୁଦ୍ର-ମଧ୍ୟମ କାରିଗର ସଂପ୍ରଦାୟ, ଛାତ୍ର, ଯୁବକ, କର୍ମଚାରୀ, ଶ୍ରମିକମାନଙ୍କ ସମସ୍ୟା ନେଇ ବହୁ ସଂଗଠନ ଓ ସଂଗ୍ରାମରେ ତାହାର କର୍ମ ପରିସରକୁ ସୀମିତ କରିନାହିଁ । ଜିଲ୍ଲାରେ ଉହାକୁ ଉହା ମରୁଡ଼ି ପୁଣି ପ୍ରବଳ ପ୍ରଳୟଙ୍କରୀ ବନ୍ୟା ହୁଏ । ସେଥିରେ ରିଲିଫ୍ କାମ, ନଦୀନାଳ ବନ୍ଧ ଲୋକଙ୍କ ଦ୍ୱାରା ନିର୍ମାଣ, ଋଣ ଆଦାୟ ଜୁଲମ୍‌ର ବିରୋଧ, ମହାଜନ ମାଲ ଉଦ୍ଧାର, ଶିକ୍ଷା, କର୍ମନିଯୁକ୍ତି ଏମିତି କୌଣସି ଜନହିତକର କାମ ନାହିଁ ଯାହାକୁ କି ଏହି ପାର୍ଟିର ନେତା, କର୍ମୀ ହାତକୁ ନେଇନାହାନ୍ତି ?

ଗଞ୍ଜାମବାସୀଙ୍କ ଜନମାନସରେ ପାର୍ଟିର ଏହି ମର୍ଯ୍ୟଦା ଯୋଗୁଁ ନାନା ବାଧା ପ୍ରତିବନ୍ଧକ, କୁତ୍ସାଭିଯାନ, ଧନବଳ, ବାହୁବଳ ସତ୍ତ୍ୱେ ଏହି ପାର୍ଟିର ଲୋକସଭା ପ୍ରାର୍ଥୀ ଏକଦା ଦୁଇ ଦୁଇ ଥର ଓଡ଼ିଶାର ପ୍ରଧାନମନ୍ତ୍ରୀ ହୋଇଥିବା ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ଏବଂ ଓଡ଼ିଶାର ବିଶିଷ୍ଟ ନେତା ବିଜୁ ପଟ୍ଟନାୟକଙ୍କୁ ପରାସ୍ତ କରିଥିଲେ । ୧୯୫୨ରୁ ୧୯୯୦ ଯାଏ ଯେତେଥର ବିଧାନସଭା ନିର୍ବାଚନ ହୋଇଛି, ଘୋର ପ୍ରତିକୂଳ ପରିସ୍ଥିତି, ଅର୍ଥାଭାବ ଓ ବିରୋଧୀ ପକ୍ଷର ଆକ୍ରମଣ ସତ୍ତ୍ୱେ କେବେ ୪ ଜଣ, ଏକାଧିକବାର ୩ ଜଣ ବା ୨ ଜଣ ବା ଜଣେ ପ୍ରାର୍ଥୀଙ୍କୁ ବିଜୟମଣ୍ଡିତ କରି ଆସିଛି । କେବଳ ୧୯୯୫ ହିଁ ବ୍ୟତିକ୍ରମ । ରାଜ୍ୟ ସଭାକୁ ସଭ୍ୟ ପ୍ରେରଣ କରିବାରେ ସମର୍ଥ ହୋଇଛି ।

Digitized by srujanika@gmail.com

ଗଞ୍ଜାମ ପାର୍ଟି ସଂଗ୍ରାମଗୁଡ଼ିକରେ ଶାଣିତ, ମାର୍କସ୍‌ବାଦୀ ଆଦର୍ଶରେ ଉଦ୍‌ବୁଦ୍ଧ ଯୁବକ ସାଥୀମାନେ ରାଜ୍ୟ ପାର୍ଟିର ସଂପାଦକ, ପ୍ରାଦେଶିକ କୃଷକ ସଭାର ସଭାପତି, ସମ୍ପାଦକ, ଏ. ଆଇ. ଟି. ୟୁ. ସିର ସଂପାଦକ, ଅଖିଳ ଭାରତ ଛାତ୍ରସଂଘ ତଥା ଅଖିଳ ଭାରତ ଯୁବ ସଂଘର ସଭାପତି, ସମ୍ପାଦକ ହୋଇଛନ୍ତି । ମୈତ୍ରୀ, ସାଂସ୍କୃତିକ ସମିତି, ଗଣନାଟ୍ୟ ସଂଘ ପ୍ରଭୃତି ଗଣ ସଂଗଠନର ନେତୃତ୍ୱରେ ମଧ୍ୟ ରହିଛନ୍ତି । ବିଧାନ ସଭାରେ ନିର୍ବାଚିତ ଆମ ଗଞ୍ଜାମ ଜିଲ୍ଲାର ବିଧାୟକମାନେ ସେମାନଙ୍କ କୃତିତ୍ୱ ପ୍ରଦର୍ଶନ କରିଛନ୍ତି ।

ଆଦ୍ୟରେ ଆସିକା ଠାରେ ପ୍ରତିଷ୍ଠିତ ଜିଲ୍ଲା ପାର୍ଟି ସଂଗଠନର ପ୍ରସାର ଆଜି ମନେ ପଡ଼େ । କି ବିଶାଳ ବିଶାଳ ଜନ ସମାବେଶ, କିପରି ବର୍ଣ୍ଣାଢ଼୍ୟ ଓ ସଂଗ୍ରାମୀ ସେ ସବୁ ପଟୁଆର । ରାଜଧାନୀ ଭୁବନେଶ୍ୱର ହେଉ ବା ଦିଲ୍ଲୀ ହେଉ, ଯେତେ ଯେତେ ସମାବେଶ ହୁଏ, ସେଥିରେ ଗଞ୍ଜାମ ପଟୁଆରକାରୀ ବାରି ହୋଇଯାନ୍ତି । ନୃତ୍ୟ ବାଦ୍ୟ ଲାଲ ବାହିନୀର ମାର୍ଚ୍ଚ, ଗଗନ ପବନ ଭେଦି ରଣ ଧ୍ୱନୀ । ମନେ ପଡ଼େ ଏହି ଗଞ୍ଜାମ ପାର୍ଟିର ସାଥୀମାନଙ୍କ ଆତ୍ମୋତ୍ସର୍ଗର ଇତିହାସ । ସହସ୍ର ସହସ୍ର ସଂଖ୍ୟାରେ ବିଭିନ୍ନ ଆନ୍ଦୋଳନରେ ଏମାନେ ଗିରଫ ହୋଇଛନ୍ତି । ମୁସ୍ତାଦାରୀ ପ୍ରଥା ବିରୋଧୀ ଆନ୍ଦୋଳନରେ ୧୯୪୮, ମାର୍ଚ୍ଚ ୨୪ ରେ ଡାକରଡାରେ ୬ ଜଣ ଶହୀଦ ବାରବର୍ଷର ହେମ ସାଙ୍ଗକୁ ଆଉ ୨ ଜଣ ରଇତ ମହିଳା, ୩ ଜଣ ପୁରୁଷ । ଏହି ପାର୍ଟିର ତୁଙ୍ଗ ନେତା ଲକ୍ଷ୍ମଣ ମହାପାତ୍ର, ଉଦୟ ମହାକୁଡ଼ିଙ୍କୁ ପାର୍ଟି ବିରୋଧୀ ଦୁର୍ବୃତ୍ତମାନେ ନିର୍ମମ ଭାବରେ ହତ୍ୟା କରିଛନ୍ତି ।

ଏହି ପାର୍ଟିର ତୁଙ୍ଗ ନେତା ଓ ୧୨/୧୩ ଜଣ ଯୁବ ସାଥୀଙ୍କୁ ମିଥ୍ୟା ହତ୍ୟା ମକଦ୍ଦମାରେ ବର୍ଷ ବର୍ଷ କାଳ ଜେଲରେ ନିକ୍ଷେପ କରାଯାଇଛି । ଅଥଚ ସେମାନେ ବିଚାରାଳୟରେ ନିର୍ଦ୍ଦୋଷରେ ଖଲାସ ହୋଇଛନ୍ତି । ୧୯୫୦-୫୧ ରେ କଂଗ୍ରେସ ସରକାର ପକ୍ଷରୁ ସାରା ରାଜ୍ୟରେ କମ୍ୟୁନିଷ୍ଟମାନଙ୍କୁ ଆକ୍ରମଣ ଓ ଗିରଫରେ ବ୍ରହ୍ମପୁର, କଟକ, ପୁରୀ, ସମ୍ବଲପୁର ଜେଲ ଭରି ଯାଇଥିଲା । ଗଞ୍ଜାମରୁ ୪୦ ରୁ ଅଧିକ ନେତା ଓ ଯୁବ କର୍ମୀ ବର୍ଷାଧିକ କାଳ ବ୍ରହ୍ମପୁରରେ ଓ ଅନ୍ୟ ଜେଲରେ ଅଟକ ବନ୍ଦୀ ଥିଲେ । ଜେଲରେ ୪୦ ଦିନରୁ ଅଧିକ କାଳ ଅନଶନ କରିଥିଲେ ଅନେକ ନେତା ।

ବିଖ୍ୟାତ ମୁସ୍ତାଦାରୀ ପ୍ରଥା ବିରୁଦ୍ଧରେ ଆନ୍ଦୋଳନ ଓ ଡାକରଡାରେ ହତ୍ୟାକାଣ୍ଡ ଭିଆଇ ସରକାର ୬ ଜଣଙ୍କୁ ମାରିବା ପରେ ବାନ୍ଧି ନେଇଥିଲା ବିଭିନ୍ନ ଗ୍ରାମର ସାଥୀମାନଙ୍କୁ । ସେଥିରେ ଡାକରଡାର ୩୪ ଜଣ, ସାଗରପଲ୍ଲୀର ୫ ଜଣ, ଶେରଗଡ଼ର ୭ ଜଣ, ଭୁଷୁଣ୍ଡାର ୩ ଜଣ, ଧବଳପୁରର ୨ ଜଣ, ଚକଳର ୨ ଜଣ ଏବଂ ଛତ୍ରଡ଼େପା ଓ ଆସିକାର ଜଣେ ଜଣେ ।

ଏହିପରି ଆତ୍ମୋତ୍ସର୍ଗ କରିଥିବା ସାଥୀମାନଙ୍କ ଐତିହ୍ୟ ବହନ କରନ୍ତି ଆଜିର ଗଞ୍ଜାମର ପାର୍ଟି—ତାହାର ନବୀନ ଯୁବ ସାଥୀମାନେ ।

ଗଞ୍ଜାମର ୧୫ଶ ପାର୍ଟି ସମ୍ମିଳନୀକୁ ଓ ସାଥୀମାନଙ୍କୁ ଅଭିନନ୍ଦନ ଜଣାଇବା ବେଳେ ସାଥୀମାନଙ୍କୁ କେତେକ ମନକଥା ଲେଖିବାକୁ ଉଚିତ ମନେ କରୁଛି ।

ଅତୀତରେ ଏହି ପାର୍ଟିର ସଫଳତା, କୃତିତ୍ୱ ଓ ମର୍ଯ୍ୟାଦାର ଗୁଡ଼ାକ ଠି ହୋଇଛି ଆଦର୍ଶରେ ଐକ୍ୟ, ଲକ୍ଷ୍ୟରେ ଐକ୍ୟ, ନିଷ୍ପତ୍ତି ନିର୍ଦ୍ଧାରଣଗୁଡ଼ିକୁ ରୂପାୟନ କଲାବେଳେ ସାଂଗଠନିକ ଐକ୍ୟ, କମ୍ୟୁନିଷ୍ଟ ସୁଲଭ ଆଚରଣ, ସମାଲୋଚନା ଆତ୍ମ-ସମାଲୋଚନା, କମ୍ୟୁନିଷ୍ଟ ନୈତିକତା, କମ୍ୟୁନିଷ୍ଟ ପାର୍ଟିର ନର୍ମ ଓ ମର୍ମ, ବ୍ୟକ୍ତିବାଦିତା ଅହଂମିକାର ପରିହାର । ଦୃଢ଼ତା ସାଙ୍ଗକୁ ନମ୍ରତା ।

ପଞ୍ଚଦଶ ଜିଲ୍ଲା ସମ୍ମିଳନୀ ବସିଲା ବେଳେ ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏତ ୟୁନିୟନ ଓ ଅନ୍ୟାନ୍ୟ ସମାଜବାଦୀ ବ୍ୟବସ୍ଥାର ଅବସାନ ଘଟିଥିଲେ ହେଁ, ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନରେ ପୁନଃ ଜାଗରଣ ସୁସ୍ପଷ୍ଟ ପ୍ରତୀୟମାନ । ସାରା ପୃଥିବୀରେ ଆମେରିକା ନେତୃତ୍ୱରେ ସାମ୍ରାଜ୍ୟବାଦୀ ଦ୍ୱାରା ସାରା ପୃଥିବୀକୁ ନୂଆ ବାନ୍ଧରେ, ଅର୍ଥନୈତିକ, ସାମରିକ, କୂଟନୈତିକ କଳ-କୌଶଳ, ଧମକ, ପ୍ରତାରଣ ଦ୍ୱାରା ନିୟନ୍ତ୍ରଣ ପ୍ରତିକାର ଉଦ୍ୟମ ।

ଦେଶରେ କେନ୍ଦ୍ର କଂଗ୍ରେସ ସରକାର ନୂତନ ଅର୍ଥନୀତି ନାମରେ ଦରଦାମ ବୃଦ୍ଧି, ଛଟେଇ, ବେକାରୀ ବଢ଼ାଇ ଚାଲିଛି । ସରକାରୀ ବୃହତ୍ ଶିଳ୍ପ ବିକ୍ରି କରି ଓ ବିଦେଶୀ ବହୁଜାତିକ ପୁଂଜିର ଅବାଧ ପ୍ରବେଶ କରାଉଛି ।

ସାମ୍ପ୍ରଦାୟିକତାବାଦୀ ବି. ଜେ. ପି., ଭି. ଏଚ୍. ପି, ଶିବ ସେନା ମେଣ୍ଟ ସାଂପ୍ରଦାୟିକ ଦଙ୍ଗା, ବିଦ୍ୱେଷ, ଧର୍ମାନ୍ଧତା ସୃଷ୍ଟି କରି ଜନମାନସକୁ ବିଭ୍ରାନ୍ତ କରି କେନ୍ଦ୍ରରେ କ୍ଷମତା ଦଖଲର ବାହୁସ୍ଫୋଟ ମାରୁଛି । ରାଜ୍ୟରେ ଲୋକଙ୍କ ଅସୁମାରି ସମସ୍ୟା ।

ଗଞ୍ଜାମ ପାର୍ଟିର ସମ୍ମିଳନୀ ଏହି ପ୍ରକାର ବିପଦକୁ ମୁକାବିଲା କରିବା ଲାଗି ପାର୍ଟି ଭିତରେ କିପରି ଅଖଣ୍ଡ ଐକ୍ୟ ପ୍ରତିଷ୍ଠା କରିବ ନୂତନ ସାଥୀମାନଙ୍କୁ କିପରି ତତ୍ତ୍ୱଗତ ଶିକ୍ଷାରେ ଶାଣିତ କରାଇବ, ଅଧିକ ସଂଗ୍ରାମ ମୁଖୀ କରାଇବ, ତାହାରି ଉପରେ ଆମ ପାର୍ଟିର ଗୌରବମୟ ଅତୀତ ଓ ବର୍ତ୍ତମାନର ଉତ୍ତରାଧିକାର ନିର୍ଭର କରେ । ବୈପ୍ଳବିକ ଅଭିନନ୍ଦନ

Digitized by srujanika@gmail.com

# କମ୍ରେଡ୍ ମୋହନ ଦାସ

ପୁରୀ ଜିଲ୍ଲାର ନିମାପଡ଼ା ନିକଟସ୍ଥ ବିଷ୍ଣୁପୁର ଗ୍ରାମରେ ସାଥୀ ମୋହନ ଦାସଙ୍କ ୨୩ ଫେବୃଆରୀ ୧୯୦୪ ରେ ଜନ୍ମ । କମ୍ରେଡ୍ ମୋହନ ଦାସ ଜୀବନର ସମସ୍ତ ମୁହୂର୍ତ୍ତକୁ ସମର୍ପଣ କରି ଆସିଛନ୍ତି ଦେଶର ସ୍ୱାଧୀନତା ପ୍ରାପ୍ତି, ସ୍ୱାଧୀନତାର ସୁରକ୍ଷା ଲାଗି କେବଳ ନୁହେଁ; ସ୍ୱାଧୀନତା ପରେ ଦେଶର କୋଟି କୋଟି ଚାଷୀ, ଦରିଦ୍ର ଲୋକେ ଯେପରି ଯାବତୀୟ ଅର୍ଥନୈତିକ ଓ ସାମାଜିକ ଶୋଷଣ ଅତ୍ୟାଚାରରୁ ରକ୍ଷା ପାଇବେ ସେପରି ସଂଗ୍ରାମର ଜଣେ ଅସାମାନ୍ୟ କର୍ଣ୍ଣଧାର ରୂପେ ମୋହନ ଦାସ ଖ୍ୟାତ ।

୧୯୨୦ ରେ ଉତ୍କଳମଣି ଗୋପବନ୍ଧୁଙ୍କ ବକୁଳବନ ବିଦ୍ୟାଳୟ ଓ ଜାତୀୟ କଲେଜରେ କୃତୀ ଛାତ୍ର ମୋହନ ଦାସ । ଦାସେ ଆପଣଙ୍କ ପ୍ରିୟ ଶିଷ୍ୟ ହୋଇ ସିଂହଭୂମିରେ କଂଗ୍ରେସ କାମ କରିବାକୁ ଯିବାଦିନୁ ତାଙ୍କ ରାଜନୈତିକ ଜୀବନର ଆରମ୍ଭ ହୁଏ । ସମାଜ ଓ ସତ୍ୟବାଦୀ ପ୍ରେସରେ ମୋହନବାବୁଙ୍କୁ ଆବଦ୍ଧ କରି ରଖିବା ପାଇଁ ଦାସେ ଆପଣଙ୍କ ଅଭିଳାଷକୁ ପଣ୍ଡିତ ନୀଳକଣ୍ଠ ଅନାଥ କରିଦେଲେ । ମୋହନ ବାବୁଙ୍କୁ ସେ କାଳରେ ଜିଲ୍ଲା ବୋର୍ଡ ନିର୍ବାଚନରେ ଭାଗ ନେବାକୁ ହେଲା । ସେ ଜିତିଲେ । ସେ ମଧ୍ୟ ପୁରୀଜିଲ୍ଲା ଲୋକାଲ ବୋର୍ଡର ଭାଇସ୍ ଚେୟାରମେନ୍ ହେଲେ ।

୧୯୩୦ ରେ ଆଇନ ଅମାନ୍ୟରେ ହଜାରିବାଗ ଜେଲ ଓ ୧୯୩୨ ରେ ପାଟନା ଜେଲ୍, ୧୯୪୦ ରେ ବ୍ୟକ୍ତିଗତ ସତ୍ୟାଗ୍ରହରେ ୧ବର୍ଷ ବ୍ରହ୍ମପୁର ଜେଲ ଓ ୧୯୪୨ ରେ ପୁନର୍ବାର ୨ ବର୍ଷାଧିକ କାଳ ବ୍ରହ୍ମପୁର ଜେଲ ଦଣ୍ଡ ଛଡ଼ା, ତାଙ୍କର ଶିକ୍ଷାଗୁରୁ ପଣ୍ଡିତ ଗୋଦାବରୀଶ ମିଶ୍ର ପାରଳା ମନ୍ତ୍ରୀମଣ୍ଡଳରେ ଥିବାବେଳେ ତାଙ୍କୁ ୪ ମାସ କୋରାପୁଟ ଜେଲରେ ଆବଦ୍ଧ କରାଯାଇଥିଲା ।

୧୯୩୭ ରେ କଂଗ୍ରେସ ପ୍ରାର୍ଥୀ ରୂପେ ବିଧାନ ସଭାରେ ଏବଂ ୧୯୫୭ରେ କମ୍ୟୁନିଷ୍ଟ ସମର୍ଥିତ ପ୍ରାର୍ଥୀ ରୂପେ ବିଧାନସଭାରେ ମୋହନ ଦାସ ଓଡ଼ିଶାର ଖଟିଖିଆ, ଚାଷୀ, ମୂଲିଆ, ଶ୍ରମିକଙ୍କ ସ୍ୱାର୍ଥ ରକ୍ଷାର ବଳିଷ୍ଠ ବୈଧାନିକର ପ୍ରତିଷ୍ଠା ଲଭିକରି ଆସିଥିଲେ ।

ସ୍ୱାଧୀନତା ସଂଗ୍ରାମ କାଳରେ କଂଗ୍ରେସ ସଙ୍ଗଠନରେ ସେ ଥିଲେ ଅନ୍ୟତମ ସଂଗଠକ । ପୁରୀଜିଲ୍ଲା କଂଗ୍ରେସ କମିଟିର ଏକଦା ସମ୍ପାଦକ, ପ୍ରାଦେଶିକ କଂଗ୍ରେସ କମିଟିର ସଦସ୍ୟ, ତଥା ଅଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟ । ସ୍ୱାଧୀନତା ସଂଗ୍ରାମ କାଳରେ ସମାଜବାଦ ପାଇଁ ଆକୃଷ୍ଟ ମୋହନ ବାବୁ ସେ କାଳରେ କଂଗ୍ରେସ ସୋସଲିଷ୍ଟ ପାର୍ଟିର କାମଦାମକୁ ସମର୍ଥନ କରି ସଙ୍ଗଠିତ କୃଷକ ସଭା ରାଜ୍ୟରେ ଆରମ୍ଭ ହେବା ପୂର୍ବରୁ ନିମାପଡ଼ା, ଗୋପ, କାକଟପୁରର ଅତ୍ୟାଚାରୀ ଜମିଦାର ଏମାର ମଠ, ଦକ୍ଷିଣ ପାର୍ଶ୍ୱ ମଠ, ଗଣେଶ ପ୍ରସାଦ ଭଗତ ଏମିତି ଅନେକ ଜମିଦାରଙ୍କ ବିରୁଦ୍ଧରେ ଚାଷୀଙ୍କୁ ସଂଗଠିତ କରି ସଂଗ୍ରାମ କରି ଓଡ଼ିଶା କୃଷକ ଆନ୍ଦୋଳନରେ ବରେଣ୍ୟ ବିପ୍ଳବୀ ନେତା ରୂପରେ ସାରା ରାଜ୍ୟରେ ଖ୍ୟାତିଲାଭ କରିଥିଲେ ।

ଗଞ୍ଜାମର ଦୁର୍ଦ୍ଧର୍ଷ ଜମିଦାର ମୁସ୍ତାଦାରମାନଙ୍କ ବିରୁଦ୍ଧରେ କମ୍ୟୁନିଷ୍ଟ ପାର୍ଟି, କୃଷକ ସଭା ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ତାର ପରବର୍ତ୍ତୀ କାଳରେ ସଂଗ୍ରାମ କରି ଯେଉଁ ବିଜୟ ହାସଲ କଲା, ସେ ସଂଗ୍ରାମରେ ମୋହନ ଦାସଙ୍କ ଅବଦାନକୁ ଆଜି ବି ଗଞ୍ଜାମର ଗାଁ ଗାଁରେ ପୁରୁଖା ଚାଷୀମାନେ ସ୍ମରଣ କରନ୍ତି ।

ମୋହନ ବାବୁ କମ୍ୟୁନିଷ୍ଟ ନଥିଲେ । ମାର୍କସ୍‌ବାଦ ଓ ଲେନିନ୍‌ବାଦରେ ସେ ନିଜକୁ ପଣ୍ଡିତ ହେଜ କରନ୍ତି ନାହିଁ । ମାତ୍ର ମାର୍କସ୍‌ବାଦ, ଲେନିନ୍‌ବାଦରେ ତାଙ୍କର ଅଟଳ ବିଶ୍ୱାସ ଏବଂ ଚାଷୀଙ୍କ ଭିତରେ ଦୈନନ୍ଦିନ କାମ, ତାଙ୍କୁ ପ୍ରକୃତରେ ବିପ୍ଳବୀ ଲେନିନ୍‌ବାଦୀ କରିଦେଇଥିଲା । ସେ କମ୍ୟୁନିଷ୍ଟ ପାର୍ଟିର ଶୃଙ୍ଖଳାକୁ ଭାରି ଡରୁଥିଲେ । ସେ କେବେ ସଦସ୍ୟ ହୋଇନଥିଲେ । ପାର୍ଟି ବୈଠକ ବସିବା ବେଳେ ସେ ସେଠାରୁ ଉଠି ଦୂରକୁ ଚାଲିଯାଆନ୍ତି । ଯିଏ ବୟସ, ଅଭିଜ୍ଞତା ଓ ଜ୍ଞାନରେ ଖୁବ୍ କନିଷ୍ଠ ଓ ତାଙ୍କୁ ଗୁରୁ ବୋଲି ଯିଏ ମାନୁଛନ୍ତି କି, ପାର୍ଟିର ଯଦି ସେ ବ୍ୟକ୍ତି ଉଚ୍ଚ ଆସନରେ ଥାଏ, ମୋହନ ବାବୁ ତାଙ୍କ କଥାକୁ ଶିରୋଧାର୍ଯ୍ୟ କରି ନିର୍ବାଚନ ସଂଗ୍ରାମ ହେଉ, ଚାଷୀ ଆନ୍ଦୋଳନ ହେଉ ଅବା ବିଧାନ ସଭାରେ କର୍ମ କୌଶଳ ହେଉ, ସେଠାରେ ପାର୍ଟି ଶୃଙ୍ଖଳା ରକ୍ଷା କରୁଥିଲେ । ଖୁବ୍ କମ୍ ଶତ କମ୍ୟୁନିଷ୍ଟ ତାଙ୍କ ଭଳି ଶୃଙ୍ଖଳିତ । ମୋହନ ବାବୁ ୯୪ ବର୍ଷ ବୟସରେ ଦେହତ୍ୟାଗ କରିଥିଲେ ।



Digitized by srujanika@gmail.com

# କମ୍ରେଡ୍ ଭଗବତୀ ଚରଣ ପାଣିଗ୍ରାହୀ

ସ୍ୱର୍ଗୀୟ ଭଗବତୀ ଚରଣ ପାଣିଗ୍ରାହୀ ଓଡିଶାର ରାଜନୈତିକ ମହାକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ର । ପୁରୀ ଜିଲ୍ଲାର ବାଲିପାଟଣା ଥାନା ବିଶ୍ୱନାଥପୁର ଗ୍ରାମରେ ଏକ ବୁଦ୍ଧିଜୀବୀ ବ୍ରାହ୍ମଣ ପରିବାରରେ ୧୯୦୮ ମସିହା ଫେବୃୟାରୀ ପହିଲାରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସ୍ୱପ୍ନେଶ୍ୱର ପାଣିଗ୍ରାହୀ । ଭଗବତୀଙ୍କ ଉପରେ ତାଙ୍କର ଆଉ ଦୁଇ ଭାଇ ଦିବ୍ୟସିଂହ ପାଣିଗ୍ରାହୀ ଓ କାଳନ୍ଦୀ ଚରଣ ପାଣିଗ୍ରାହୀ ।

ସ୍ୱପ୍ନେଶ୍ୱର ପାଣିଗ୍ରାହୀ ପୁରୀରେ ଓକିଲାତି କରୁଥିଲେ ଓ ଭଗବତୀ ଏଠାରେ ରହି ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିଲେ । ସେହି ସମୟରେ ଜିଲ୍ଲା ସ୍କୁଲରେ ଛାତ୍ର ଧର୍ମଘଟ ଯୋଗୁଁ ଭଗବତୀ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଅଧ୍ୟୟନ ପାଇଁ ଯୋଗ ଦେଲେ । ପୁନଶ୍ଚ ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ ।

ପୁରୀ ଜିଲ୍ଲା ସ୍କୁଲ ଅଧ୍ୟୟନ ପରେ ସେ ଉଚ୍ଚଶିକ୍ଷା ପାଇଁ ପାଟନା ଗଲେ । ସେଠାରେ ସେ ଏମ୍. ଏ. ପାଶ୍ କରି ଓଡିଶାକୁ ଫେରି ଆସି କଟକରେ ରେଭେନସା କଲେଜରେ ଆଇନ ଶାସ୍ତ୍ର ଅଧ୍ୟୟନ କଲେ ।

ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ ପ୍ରାଣନାଥ ପଟ୍ଟନାୟକ । ପ୍ରାଣନାଥ ପଟ୍ଟନାୟକ ବହୁ ସମୟରେ ତାଙ୍କ ଗମଚଣ୍ଡୀ ସାହି ଘରକୁ ଆସନ୍ତି । ତାଂକ ଘରକୁ ବିଭିନ୍ନ ଖବର କାଗଜ ଓ ମାଗାଜିନ୍ ମାନ ଆସୁଥାଏ । ଏଗୁଡକ ପଢିବାର ସୁଯୋଗ ଥାଏ । ତେଣୁ ଭଗବତୀ ଓ ପ୍ରାଣନାଥ ଉଭୟେ ଏକତ୍ର ମିଶିଗଲେ ଖବର କାଗଜ ପଢିବା ଓ ସାରା ପୃଥିବୀରେ ଘଟିଯାଉଥିବା ଘଟଣାବଳୀ ଉପରେ ଦୁହିଁଙ୍କ ମଧ୍ୟରେ ଦୀର୍ଘ ସମୟ ଧରି ଆଲୋଚନାରେ ସମୟ କଟିଯାଉଥିଲା ।

ଭଗବତୀଙ୍କ ପିତା ଓ ବଡ ଭାଇନା ଓକିଲ ଥିଲେ ମଧ୍ୟ ସାହିତ୍ୟ ଚର୍ଚ୍ଚା କରୁଥିଲେ । ମଝିଆ ଭାଇନା କାଳନ୍ଦୀ ଚରଣ ପାଣିଗ୍ରାହୀ ଛାତ୍ର ଜୀବନରୁ ସାହିତ୍ୟ ଚର୍ଚ୍ଚା କରୁଥିଲେ । ସାହିତ୍ୟପ୍ରେମୀ ବନ୍ଧୁମାନେ ବେଳେ ବେଳେ ତାଂକ ଗୃହରେ ଏକତ୍ର ହୋଇ ରାଜନୀତି, ସାହିତ୍ୟ ଆଦି ବିଷୟରେ ଆଲୋଚନା ଚଳାଉଥିଲେ । ଏହି ଆଲୋଚନା ଗୁଡକ ଶୁଣିବାରେ ଛାତ୍ରଜୀବନରୁ ଭଗବତୀ ଖୁବ୍ ଆଗ୍ରହୀ ହୋଇ ଉଠିଥିଲେ । ପରିବାରର ପରିବେଶ ଓ ବିଭିନ୍ନ ଜ୍ଞାନୀ ଲୋକମାନଙ୍କର ଆଲୋଚନାର ପ୍ରଭାବ ଭଗବତୀଙ୍କ ଉପରେ ପଡିଥିଲା । ଛାତ୍ର ଜୀବନରୁ ସେ ଲେଖାଲେଖି ଆରମ୍ଭ କରି ଦେଇଥିଲେ । ତାଂକର ଲେଖାଗୁଡ଼ିକ ଯୁଗବୀଣା, ଉତ୍କଳ ସାହିତ୍ୟ, ସହକାର, ନବଭାରତ, ପ୍ରଗତି ଆଦି ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଥିଲା ।

ଯେଉଁମାନେ ଭାରତର ସ୍ୱାଧୀନତାର ଆନ୍ଦୋଳନରେ ଓଡିଶାର ଅଗ୍ରଣୀ ନେତାଥିଲେ ସେମାନଂକ ମଧ୍ୟରୁ ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ କୃପାସିନ୍ଧୁ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ଜଗବନ୍ଧୁ ସିଂହ ଓ ବନମାଳୀ ଦାସଙ୍କ ସମେତ ବହୁ ବିଶିଷ୍ଟ ଦେଶପ୍ରେମୀ, ବୁଦ୍ଧିଜୀବୀ, ଆଇନଜୀବୀ ତାଂକ ପରିବାର ସହିତ ମିଶିବା ବେଳେ ଭାରତର ରାଜନୀତି ବିଷୟରେ ଆଲୋଚନା କରୁଥିଲେ । ଗାନ୍ଧୀଜୀଙ୍କ ଆହ୍ୱାନରେ ବଡ ଭାଇନା ଦିବ୍ୟସିଂହ ପାଣିଗ୍ରାହୀ କଚେରୀ ବର୍ଜନ କଲେ ଓ ମଝିଆ ଭାଇନା କାଳନ୍ଦୀ ଚରଣ ପାଣିଗ୍ରାହୀ ପାଠପଢା ଛାଡି କିଛି ସମୟ ପାଇଁ ଜାତୀୟ ଆନ୍ଦୋଳନରେ ଯୋଗଦେଲେ । ଏହାର ପ୍ରଭାବ ଭଗବତୀଙ୍କ ଉପରେ ପଡିଥିଲା । ସେ ଭାରତର ସ୍ୱାଧୀନତା ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲେ ।

ଇତିହାସ ଓ ସମାଜ ବିଜ୍ଞାନର ଛାତ୍ର ହିସାବରେ ସେ ଫରାସୀ ବିପ୍ଳବ, ଯୁଗାନ୍ତକାରୀ ଋଷ୍ ବିପ୍ଳବ ଓ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ, ବଙ୍ଗଭଙ୍ଗ ଆନ୍ଦୋଳନ, ଆଇନ ଅମାନ୍ୟ ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ଅନୁଶୀଳନ କରୁଥିଲେ ଏବଂ ଗାନ୍ଧୀଜୀ, ନେହୁରୁ, ସୁବାଷ ବୋଷ, ଭଗତ ସିଂହ, ଜାଲିଆନାବାଗ ହତ୍ୟା ଲୀଳା ସମ୍ପର୍କରେ ଜାଣିବାକୁ ଉତ୍କଣ୍ଠା ପ୍ରକାଶ କରୁଥିଲେ ।

ପାଟନାରେ ଏମ୍. ଏ. ପଢିବା ସମୟରେ ସେଠା ପରିବେଶର ପ୍ରଭାବ ବହୁ ପରିମାଣରେ ଭଗବତୀଙ୍କ ଉପରେ ପଡିଥିଲା । ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟରେ କେତେକ ସମାଜବାଦୀ (ସୋସିଆଲିଷ୍ଟ) ଓ ସାମ୍ୟବାଦୀ (କମ୍ୟୁନିଷ୍ଟ) ଚିନ୍ତାଧାରାର ଅଧ୍ୟାପକମାନେ ଥିଲେ । ସେମାନଂକ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ଜ୍ଞାନଚାନ୍ଦ । ତାଂକ ଦ୍ୱାରା ପ୍ରଭାବିତ ହୋଇ ଭଗବତୀ

Digitized by srujanika@gmail.com

ସାମ୍ୟବାଦୀ ବିଚାର ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ଭାରତର ଶ୍ରମିକ ଆନ୍ଦୋଳନ, ଗାନ୍ଧୀଜୀ, ପଣ୍ଡିତ ନେହରୁ ଓ ସୁବାସ ବୋଷଙ୍କ ଆହ୍ୱାନର ପ୍ରଭାବ ଭଗବତୀଙ୍କ ଉପରେ ପଡ଼ିଥିଲା । ତେଣୁ ଭଗବତୀ ଜାତୀୟ ମୁକ୍ତି ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ଗାନ୍ଧୀଜୀଙ୍କ ପ୍ରଦର୍ଶିତ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେବାକୁ ବାହାରି ପଡ଼ିଲେ ।

୧୯୧୭ ମସିହାରେ ଏକ ଯୁଗାନ୍ତକାରୀ ବିପ୍ଳବ ଜରିଆରେ ଋଷିଆରେ ଗରିବ ଚାଷୀ, ମୂଲିଆ ଲୋକେ କ୍ଷମତା ଦଖଲ କରି ସୋଭିଏତରାଷ୍ଟ୍ର ପ୍ରତିଷ୍ଠା କରିବା ଓ ସେଠାରେ ଘଟିଯାଉଥିବା ରାଜନୈତିକ, ସାମାଜିକ ପରିବର୍ତ୍ତନର ପ୍ରଭାବ ଭାରତର ଯୁବ, ଛାତ୍ରମାନଂକ ଉପରେ ପଡୁଥାଏ । ଭାରତର ରାଜନୈତିକ କାର୍ଯ୍ୟକଳାପ ଉପରେ ଏହି ଛାତ୍ରମାନଂକ ମଧ୍ୟରେ ଆଲୋଚନା, ତର୍କ, ବିତର୍କ ପ୍ରତିଦିନ ଚାଲୁଥାଏ । ଗାନ୍ଧୀଜୀଙ୍କ ପ୍ରଦର୍ଶିତ ସତ୍ୟାଗ୍ରହ ଯୁବକମାନଙ୍କୁ ଉଦ୍‌ବୃଦ୍ଧ କରି ପାରୁନଥାଏ । ତେଣୁ ଏହି ଯୁବ ଛାତ୍ରମାନେ ନୂତନ ପଥର ଅନୁସନ୍ଧାନ ଚଳାଇବା ଦିଗରେ ବ୍ୟାକୁଳତା ପ୍ରକାଶ କରୁଥିଲେ । ଭଗବତୀ ଏମାନଂକ ସହିତ ଆଲୋଚନାରେ ନିଜକୁ ସାମିଲ କରି କ୍ରମେ ସମାଜବାଦ ଓ ବୈପ୍ଳବିକ ସଂଗଠନ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ ।

ପାଠ ପଢ଼ିବା ସମୟରେ ନିଜର ଅନିଚ୍ଛା ସତ୍ତ୍ୱେ ପରିବାରର ଚାପରେ ସେ ୧୯୩୦ ମସିହାରେ ସରସ୍ୱତୀ ଦେବୀଙ୍କୁ ବିବାହ କରିଥିଲେ । ସେ ତିନି ଗୋଟି କନ୍ୟା ସନ୍ତାନର ଜନକ ଥିଲେ । ବଡ଼ ଝିଅ ସୁଷମା, ମଧ୍ୟମା ଚନ୍ଦ୍ରିକା ଓ ସାନ ଜୟସ୍ମୃତି । ଭଗବତୀ ଜନସାଧାରଣଙ୍କ ସେବାରେ ବହୁ ସମୟ ଦେଉଥିବାରୁ ତାଂକ ସ୍ତ୍ରୀ ଓ କନ୍ୟାଙ୍କୁ ବହୁ କଷ୍ଟରେ ଜୀବନ କଟାଇବାକୁ ପଡୁଥିଲା ।

ଭଗବତୀ କ୍ରମେ ବୈପ୍ଳବିକ ସଂଗଠନରେ ଯୋଗ ଦେଲେ । କଂଗ୍ରେସ ଭିତରେ ଥିବା ବାମପନ୍ଥୀ ଚିନ୍ତାଧାରାର ଯୁବକମାନଂକ ସହିତ ମିଶି କଂଗ୍ରେସ-ସୋସାଲିଷ୍ଟ ପାର୍ଟି ଗଠନ କଲେ । ମାର୍କସ୍‌ବାଦ ପ୍ରତି ଆକୃଷ୍ଟ ହୋଇ ଓଡ଼ିଶାରେ ଗୁପ୍ତ କମ୍ୟୁନିଷ୍ଟ ସଂଗଠନ ଗଠନରେ ଯୋଗଦେଲେ । କୃଷକ, ଶ୍ରମିକ, ଯୁବକ, ଛାତ୍ର ସଂଘମାନ ଗଠନ କରିବାରେ ଲାଗିପଡ଼ିଲେ । ଶ୍ରମିକ କୃଷକମାନଂକର ସ୍ୱାର୍ଥ ପାଇଁ ଆନ୍ଦୋଳନରେ ଯୋଗ ଦେଲେ । ମୋଗଲ ବନ୍ଦୀ ଅଞ୍ଚଳରେ ଜମିଦାରମାନଙ୍କ ବିରୁଦ୍ଧରେ ଓ ଗଡ଼ଜାତ ଅଞ୍ଚଳରେ ରାଜାମାନଙ୍କ ବିରୁଦ୍ଧରେ ଆନ୍ଦୋଳନର ନେତୃତ୍ୱ ଦେଲେ ।

ଯୁବ ଲେଖକମାନଙ୍କୁ ସଂଗଠିତ କରି "ନବଯୁଗ ସାହିତ୍ୟ ସଂସଦ" ଓ "ପ୍ରଗତିଶୀଳ ଲେଖକ ସଂଘ" ଗଠନ କଲେ ।

ସାରଥୀ, ଆଧୁନିକ, କୃଷକ, ପ୍ରଗତି, ମୁକ୍ତିଯୁଦ୍ଧ, ଆଗେଚାଲ ଆଦି ପତ୍ରିକାରେ ନିଜର ନିର୍ଭୀକ ମତ ପ୍ରକାଶ କରୁଥିଲେ । ଜନସାଧାରଣଙ୍କ ଉପରେ ଘଟି ଚାଲିଥିବା ଅତ୍ୟାଚାରର କାହାଣୀ ଲୋକ ଲୋଚନକୁ ଆଣି ପାରୁଥିଲେ । ଏହିସବୁ ଖବର କାଗଜଗୁଡ଼ିକ ସଂଗ୍ରାମର ହତିଆର ରୂପେ ବ୍ୟବହାର କରୁଥିଲେ ।

ଓଡ଼ିଆ ସାହିତ୍ୟକୁ ଭଗବତୀଙ୍କର ଯଥେଷ୍ଟ ଦାନ ରହିଛି, ଓଡ଼ିଆ ସାହିତ୍ୟକୁ ସେ ଗଣମୁଖୀ ଓ ବାମମୁଖୀ ଆଡ଼କୁ ମୁହାଁଇ ନେଇଥିଲେ । ସାହିତ୍ୟରେ ସମାଜବାଦୀ ଭାବଧାରାକୁ ସ୍ଥାନ ଦେଇଥିଲେ । ତାଂକର "ଶିକାରୀ" ଗଳ୍ପ ଓଡ଼ିଆ ସାହିତ୍ୟରେ ଏକ ନୂତନ ଚେତନା ଓ ନୂତନ ଧାରା ସୃଷ୍ଟି କରିଥିଲା । ତାଙ୍କ ଦ୍ୱାରା ରଚିତ ସାମାଜିକ ଜୀବନ ଉପରେ ବିଭିନ୍ନ ଗଳ୍ପ ବିଭିନ୍ନ ସମୟରେ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇ ସାହିତ୍ୟକମାନଂକ ମଧ୍ୟରେ ସେଗୁଡ଼ିକ ଅତି ଉଚ୍ଚ କୋଟିର ବୋଲି ପ୍ରଶଂସିତ ହୋଇଛି ।

ଓଡ଼ିଶାର ରାଜନୀତିରେ ଭଗବତୀ ଥିଲେ ମାର୍କସ୍‌ବାଦ ଭାବଧାରାର ଭଗୀରଥ । ଓଡ଼ିଶା ରାଜନୀତି କ୍ଷେତ୍ରକୁ ମାର୍କସ୍‌ବାଦୀ ବୈଜ୍ଞାନିକ ସାମ୍ୟବାଦ ବିଚାରକୁ ଯେଉଁମାନେ ବାହାରି ଆଣିଥିଲେ ସେମାନଙ୍କ ମଧ୍ୟରେ ଭଗବତୀ ଥିଲେ ଅନ୍ୟତମ । ମାର୍କସ୍‌ବାଦର ପ୍ରଚାର, ଗୁପ୍ତ କମ୍ୟୁନିଷ୍ଟ ସଂଗଠନ ଗଠନ, ଗଡ଼ଜାତର ପ୍ରଜା ଆନ୍ଦୋଳନ, କୃଷକ ଆନ୍ଦୋଳନ ଯୋଗୁ ସେ ବ୍ରିଟିଶ୍ ସରକାର, ରାଜା, ଜମିଦାରମାନଙ୍କ କୋପ ଦୃଷ୍ଟିର ଶୀକାର ହୋଇଥିଲେ । ଏକ ଷଡ଼ଯନ୍ତ୍ର ମାମଲାରେ ଦଣ୍ଡିତ ହୋଇ ସେ ଅଢ଼େଇ ବର୍ଷକାଳ କାରାଦଣ୍ଡ ଭୋଗ କରିଥିଲେ ।

ଭଗବତୀ କେବଳ ଜଣେ ବିପ୍ଳବୀ, ସଂଗ୍ରାମୀ, ସାହିତ୍ୟକ, ସାମ୍ବାଦିକ ନଥିଲେ, ସେ ମଧ୍ୟ ଜଣେ ମାନବବାଦୀ ସମାଜସେବୀ ଥିଲେ । ଲୋକଙ୍କର ବିପଦ, ଆପଦ ବେଳେ ସେ ଲୋକଂକ ସେବାରେ ନିଜକୁ ନିୟୋଗ କରୁଥିଲେ ।

Digitized by srujanika@gmail.com

୧୯୪୩ ମସିହା ଦ୍ୱିତୀୟ ମହାସମର ସମୟରେ ଓଡ଼ିଶାରେ ଘୋର ଦୁର୍ଭିକ୍ଷ ପଡ଼ି ଖାଦ୍ୟାଭାବ ଦେଖା ଦେଇଥାଏ । ଲୋକେ ଖାଇବାକୁ ନପାଇ ନାନା ଅଖାଦ୍ୟ ଖାଇ ମୃତ୍ୟୁବରଣ କରୁଥାନ୍ତି । ପୁରୀ ଓ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଅଞ୍ଚଳର ଲୋକେ ଅନାହାରରେ ପଡ଼ି ମୃତ୍ୟୁବରଣ କରୁଥିବା ସମ୍ବାଦ ପାଇ ସେ ଓଡ଼ିଶାରେ ଗୋଟିଏ ରିଲିଫ କମିଟି ଗଠନ ପାଇଁ ଉଦ୍ୟମ ଚଳାଇଥିଲେ । ଓଡ଼ିଶା ହାଇକୋର୍ଟର ପୂର୍ବତନ ଜଜ୍ ଶ୍ରୀଯୁକ୍ତ ହରିହର ମହାପାତ୍ରଙ୍କ ସଭାପତିତ୍ୱରେ ଏକ କମିଟି ଗଠନ ହେଲା । ଏହି କମିଟି ତରଫରୁ କିଛି ଖାଦ୍ୟ ପଦାର୍ଥ ଧରି ଭଗବତୀ ପାଣିଗ୍ରାହୀ ଗଞ୍ଜାମ ଦୁର୍ଭିକ୍ଷ ଅଞ୍ଚଳ ଗସ୍ତ କଲେ । ସେଠାରେ ଉପବାସ ଓ ନାନା ଅଖାଦ୍ୟ ଖାଇ ନାଳରକ୍ତ ଝାଡ଼ାରେ ଆକ୍ରାନ୍ତ ହୋଇ ପଡ଼ିଲେ । ଚିକିତ୍ସା ପାଇଁ ତାଙ୍କୁ କଟକ ଅଣାଗଲା । କିନ୍ତୁ ଉପଯୁକ୍ତ ଚିକିତ୍ସା ଓ ଔଷଧର ଅଭାବରୁ ୧୯୪୩ ଅକ୍ଟୋବର ୨୩ ତାରିଖରେ ତାଙ୍କର ମୃତ୍ୟୁ ଘଟିଲା ।

ଭଗବତୀଙ୍କ ଜୀବନକାଳ ମାତ୍ର ଚଉତ୍ରିଶ ବର୍ଷ ମଧ୍ୟରୁ ପିଲାଳିଖେଳ, ଅଧ୍ୟୟନ ସମୟ ପରେ ମାତ୍ର ଏକ ଦଶନ୍ଧିରୁ ଅଧିକ କାଳ ଭିତରେ ତାଂକର ରାଜନୈତିକ ଆଦର୍ଶ, ତାଙ୍କର ବୈପ୍ଳବିକ ଚିନ୍ତା ଓ ଚେତନା ସ୍ୱାଧୀନତା ସଂଗ୍ରାମକୁ ପ୍ରଗତିଶୀଳ କରାଇଥିଲା । ଶୋଷଣ ବିହୀନ ସମାଜ ଗଠନର ସଂଗ୍ରାମ ଲାଗି ସମାଜବାଦୀ ରାଜନୈତିକ ସଂଗଠନ ଗଢ଼ିବାରେ ତାଙ୍କର କ୍ଷଣକାଳ ଓଡ଼ିଶାରେ ଭୂମିକା ସୃଷ୍ଟି କରିଥିଲା ଏବଂ ସେ ସୃଷ୍ଟି କରିଥିଲେ ରାଜନୈତିକ ଆକାଶରେ ଏକ ନୂତନ ଯୁଗ । ସେହି ନୂତନ ଯୁଗର ଜଣେ ପ୍ରବାଦ ପୁରୁଷ ହୋଇଗଲେ ଏହି ସ୍ୱଳ୍ପ ବର୍ଷୀୟ ବିପ୍ଳବୀ ଯୁବ ଭଗବତୀ ।

*With best compliments from :*

**SEA CRAFTS MARINE SERVICE**

**Gopalpur Port, Arjeepalli (Gm)**

*Digitized by srujanika@gmail.com*

# କମ୍ରେଡ୍ ରାମକୃଷ୍ଣ ପତି

ଓଡ଼ିଶାର କମ୍ୟୁନିଷ୍ଟ ଆନ୍ଦୋଳନର ଅନ୍ୟତମ ପଥଦର୍ଶକ ଥିଲେ ସାଥୀ ରାମକୃଷ୍ଣ ପତି । ସେ ସ୍ୱାଧୀନତା ସଂଗ୍ରାମୀ ସାଙ୍ଗକୁ ଓଡ଼ିଶାରେ ଶୋଷଣ ବିହୀନ, ଶ୍ରେଣୀ ବିହୀନ, ବିଜ୍ଞାନ ସମ୍ମତ ସମାଜବାଦୀ ଆନ୍ଦୋଳନର କର୍ଣ୍ଣଧାର ଥିଲେ ।

୧୯୩୬-୩୭ରେ ରେଭେନ୍ସା କଲେଜରେ ପାଠ ପଢ଼ୁଥିବା ସମୟରେ ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇ କଂଗ୍ରେସରେ ଯୋଗ ଦେଇଥିଲେ । କଂଗ୍ରେସ କର୍ମୀ ରୂପେ ସେ ଜଗତ୍‌ସିଂହପୁର କାନ୍ଦୁଅପଡ଼ା ସୂତାକଟା ଶିବିରରେ ଶିକ୍ଷାର୍ଥୀ ହେଲେ । ମାତ୍ର ମାର୍କସ୍‌ବାଦ-ଲେନିନ୍‌ବାଦ ପ୍ରତି ତାଙ୍କର ଝୁଙ୍କ ତାଙ୍କୁ ଆଣି ଥୋଇଦେଲା କମ୍ୟୁନିଷ୍ଟ ଶିବିରରେ । ତାଙ୍କର ପ୍ରଥମ ତାଲିମ ହେଲା କମ୍ରେଡ୍ ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ବନମାଳୀ ଦାସ, ଦୁର୍ଗା ଚରଣ ମହାନ୍ତି, ଶରତ ପଟ୍ଟନାୟକ ପ୍ରମୁଖ କଟକ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମାରେ ବନ୍ଦୀମାନଙ୍କ ବିରୁଦ୍ଧରେ ସରକାରୀ ମକଦ୍ଦମାକୁ କପର ଲଢ଼ାଯିବ ସେଥିରେ ।

୧୯୪୬ ରେ ସ୍ୱାଧୀନତା ପୂର୍ବ ମହତାବ ସରକାରର ତୀବ୍ର ବିରୋଧ, ପଟିଆ ଜିଲ୍ଲାର ଜମିଦାର ପ୍ରତାପୀ କନିକା ରାଜାଙ୍କ ବିରୋଧ ସତ୍ତ୍ୱେ କୁଆଖାଇ ଓ ଦୋମୁହାଣୀରେ ୯ ମାଇଲ ବ୍ୟାପୀ ପଟିଆ ବନ୍ଧ ନିର୍ମାଣ ପାଇଁ ଶହ ଶହ ସାଥୀ ଓ ସହସ୍ର ସହସ୍ର ପଟିଆର ଜନତାକୁ ସଂଗଠିତ କରି କମ୍ୟୁନିଷ୍ଟ ପାର୍ଟି ପାଇଁ ଗୌରବ ଆଣି ଦେଇଥିଲେ ସାଥୀ ରାମକୃଷ୍ଣ ପତି । ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ବ୍ରିଟିଶ ଶାସନର ମାଡରେ ଖାଦ୍ୟ ବିନା ହାହାକାର କରୁଥିବା କଟକ ସହରର ଶଙ୍କରପୁର, ବଳଭଦ୍ରପୁର ଓ ବିଡ଼ାନାସୀର ଜନତାକୁ ସଂଗଠିତ କରି ସଂଗ୍ରାମର ସେ ଥିଲେ ପଥଦର୍ଶକ ନେତା । ପ୍ରେସ ଶ୍ରମିକ ଠାରୁ ଦରଜୀ ଶ୍ରମିକଙ୍କ ନେତା ରୂପେ ସେ କଟକ ସହରରେ କମ୍ୟୁନିଷ୍ଟ ପାର୍ଟିର ପ୍ରସାରରେ ଥିଲେ ଜଣେ ଅଗ୍ରଦୂତ ।

୧୯୪୮-୫୧ କଂଗ୍ରେସ ଶାସନ, କମ୍ୟୁନିଷ୍ଟଙ୍କ ଉପରେ ନାହିଁ ନଥିବା ଆକ୍ରମଣ କାଳରେ ରାଜ୍ୟ ପାର୍ଟିର ସମ୍ପାଦକ ଥିଲେ । କେନ୍ଦ୍ର କାର୍ଯ୍ୟକାରୀ କମିଟି ସଭ୍ୟ ଥିଲେ । ନୂଆ ଦୁନିଆର ସଂପାଦକ ହୋଇ ନବଯୁଗ ପ୍ରେସର ନବକଳେବର କରିଥିଲେ । ସେ ବିଧାୟକ ଭାବେ ଓଡ଼ିଶାର ଜନସାଧାରଣଙ୍କ ସମସ୍ୟାକୁ ବିଧାନ ସଭାରେ ସଠିକ୍ ଭାବେ ଉତ୍ଥାପିତ କରିଥିଲେ ।

ସେ ଥିଲେ ଉଚ୍ଚ ଶିକ୍ଷିତ, ଲେଖକ, ବାଗ୍ମୀ, ମାର୍କସ୍‌ବାଦୀ ତତ୍ତ୍ୱବିତ୍ତ । ସାମନ୍ତବାଦୀ ପ୍ରଥା ବିରୁଦ୍ଧରେ ସଂଗ୍ରାମର ତାତ୍ତ୍ୱିକ ହାତିଆର "ଜମିଦାରୀ ଉଚ୍ଛେଦରେ ଉତ୍କଳର ନୂଆ କଳେବର" ଓ ପୁଞ୍ଜିବାଦ ପୁସ୍ତକର ରଚୟିତା ଥିଲେ ରାମକୃଷ୍ଣ ପତି ।

ଗଞ୍ଜାମ ଜିଲ୍ଲା ପାର୍ଟି ଗଠନରେ ସାଥୀ ରାମକୃଷ୍ଣ ପତି ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ୧୯୪୬ ରେ ଆସ୍କା ଠାରେ ଅନୁଷ୍ଠିତ ବିଧିବଦ୍ଧ ଭାବେ ସଂଗଠିତ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ପ୍ରଥମ ସମ୍ମିଳନୀରେ ରାଜ୍ୟ ତରଫରୁ ଯୋଗ ଦେଇ ଗଞ୍ଜାମ ପାର୍ଟିକୁ ପଥ୍‌ ଦର୍ଶନ ଦେଇଥିଲେ । ଗଞ୍ଜାମ ଜିଲ୍ଲାର ବିଭିନ୍ନ ଆନ୍ଦୋଳନ ଓ ପାର୍ଟି ସଂଗଠନ ଲାଗି ତାଙ୍କର ଆନ୍ଦୋଳନ ଚିର ସ୍ମରଣୀୟ ।



Digitized by srujanika@gmail.com



# ବ୍ରହ୍ମପୁର ପୌରପାଳିକା

## ଆମର ସଂକଳ୍ପ

* ପ୍ରତ୍ୟେକ ୱାର୍ଡରେ ସୁଲଭ ଶୌଚାଳୟ ନିର୍ମାଣ ଓ ଉଜ୍ଜ୍ୱଳ ଆଲୋକ ବ୍ୟବସ୍ଥା ।
* ମଇଳା ଜଳ ନିଷ୍କାସନ ଓ ଅଳିଆ ସଫା ଅଗ୍ରାଧିକାର ଭିତ୍ତିରେ ସଂପାଦନ ।
* ଅର୍ଥନୈତିକ ଦୃଷ୍ଟିରୁ ପଛୁଆ ଲୋକଙ୍କ ମାନବୃଦ୍ଧି ପାଇଁ ନେହେରୁ ରୋଜଗାର ଯୋଜନା ମାଧ୍ୟମରେ ସାହାଯ୍ୟ ପ୍ରଦାନ ।
* ନାଗରିକଙ୍କ ବୌଦ୍ଧିକ ବିକାଶ ପାଇଁ ଶିକ୍ଷାନୁଷ୍ଠାନ ଓ ପାଠାଗାର ଗୁଡ଼ିକର ସୁପରିଚାଳନା ।
* ସହରକୁ ପ୍ରଦୂଷଣ ମୁକ୍ତ କରିବା ପାଇଁ ଶ୍ମଶାନଘାଟ ଗୁଡ଼ିକୁ ଆଧୁନିକରଣ କରିବା ।
* ସହରର ସ୍ୱାସ୍ଥ୍ୟାବସ୍ଥାର ଉନ୍ନତି କରିବା ତଥା ସହରବାସୀଙ୍କ ନାଗରିକ ସଚେତନତା ବୃଦ୍ଧି କରିବା ।
* ଆଗାମୀ ବଂଶଧରମାନଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ ବରପୁତ୍ରମାନଂକ ପ୍ରତିମୂର୍ତ୍ତି ସ୍ଥାପନ ।

## ସହରବାସୀଙ୍କୁ ଆମର ନିବେଦନ

* ପୌରପାଳିକାର ସମସ୍ତ ପ୍ରକାର ଟିକସ ଯଥା ସମୟରେ ପୈଠ କରନ୍ତୁ ।
* ସାଇକେଲ, ରିକ୍‌ସା, ଶଗଡ଼, ଇତ୍ୟାଦି ଯାନବାହାନ ଓ ବାଣିଜ୍ୟ ବ୍ୟବସାୟ ଅନୁଷ୍ଠାନ ପାଇଁ ଧାର୍ଯ୍ୟ ଫିସ ପୈଠ କରି ଲାଇସେନସ୍‌ କରାଇ ନିଅନ୍ତୁ ।
* ରାସ୍ତା ଓ ସର୍ବସାଧାରଣ ସ୍ଥାନରେ ଇଟା, ମାଟି, ପଥର, ବାଲି, ଗୋଡ଼ି ଇତ୍ୟାଦି ଜମାକରି ସର୍ବସାଧାରଣଂକ ଯାତାୟତରେ ବାଧା ସୃଷ୍ଟି କରନ୍ତୁ ନାହିଁ ।
* ରାସ୍ତାରେ ଗୋ-ମହିଷାଦି ଗୃହପାଳିତ ପଶୁ ବିଚରଣ କରିବାକୁ ଛାଡ଼ନ୍ତୁ ନାହିଁ ।
* ଅଳିଆ, ଆବର୍ଜନା, ନାଳ ନର୍ଦ୍ଦମାରେ ନ ପକାଇ ଉଦ୍ଦିଷ୍ଟ ସ୍ଥାନରେ ପକାନ୍ତୁ ଓ ମଶାମାଛି ଦାଉରୁ ରକ୍ଷା ପାଆନ୍ତୁ ।
* ସୀମିତ ସମ୍ବଳ ମଧ୍ୟରେ ଐତିହାସିକ ସହର ବ୍ରହ୍ମପୁରକୁ ସର୍ବାଙ୍ଗ ସୁନ୍ଦର ଓ ପ୍ରଦୂଷଣ ମୁକ୍ତ ନିର୍ମଳ ସହରରେ ପରିଣତ କରିବା ପାଇଁ ପୌରପାଳିକାର ଉଦ୍ୟମକୁ ସାକାର କରିବାରେ ଜନସାଧାରଣ ସହଯୋଗ କରନ୍ତୁ ।

"ସର୍ବସାଧାରଣଙ୍କ ସମ୍ପତ୍ତି ଆପଣଂକର
ତାର ରକ୍ଷଣାବେକ୍ଷଣ ଦାୟିତ୍ୱ ଆପଣଂକର ।"

**ମାଗୁଣି ଚରଣ ଜେନା**
ନିର୍ବାହୀ ଅଧିକାରୀ

**ମକରଧ୍ୱଜ ହୋତା**
କଳ୍ପାପାଳ ଏବଂ ନଗରପାଳ

Digitized by srujanika@gmail.com

# କମ୍ରେଡ୍ ହରିବନ୍ଧୁ ବେହେରା

ଦାରିଦ୍ର୍ୟ, ଅଭାବ ଅନାଟନର ଏନ୍ତୁଡ଼ଶାଳରେ ସାଥୀ ହରିବନ୍ଧୁ ବେହେରାଙ୍କ ଜନ୍ମ ୩୦ ମାର୍ଚ୍ଚ ୧୯୩୦ ରେ । ସେ ଯୁବାକାଳରୁ କମ୍ୟୁନିଷ୍ଟ ପାର୍ଟି ପ୍ରତି ଆକୃଷ୍ଟ ହୋଇଥିଲେ, ନିଜର ଦାରିଦ୍ର୍ୟ ମୋଚନ ଲାଗି ନୁହେଁ; ସମାଜରୁ ଦାରିଦ୍ର୍ୟ, ଅନାଟନ, ଶୋଷଣର ବିଲୋପ ସାଧନର ଏକ ମହାନ ଯୁଦ୍ଧ ଯଜ୍ଞରେ । ପୁଞ୍ଜିବାଦର ମୂଳୋତ୍ପାଟନ ଓ ମାନବ ମୁକ୍ତିର ସଠିକ ମାର୍ଗ ସମାଜବାଦର ପ୍ରତିଷ୍ଠା, ଏହି ଆଦର୍ଶକୁ ବରଣ କରିନେଲେ ହରିବନ୍ଧୁ ।

ଗଞ୍ଜାମ ଜିଲ୍ଲାର ଅସ୍କା ନିକଟସ୍ଥ ଏକ କ୍ଷୁଦ୍ରଗ୍ରାମ ଦାମୋଦର ପଲ୍ଲୀରେ ନିହାତି ଏକ ଗରିବ ଘରେ ହରିବନ୍ଧୁଙ୍କ ଜନ୍ମ । ବିଧବା ମୂଳପାତି ଲତା ମା'ର ପ୍ରଥମ ସନ୍ତାନ ଶତ୍ରୁଘ୍ନ, ସେ ମଧ୍ୟ ଜଣେ ସ୍ୱାଧୀନତା ସଂଗ୍ରାମୀ । ଦ୍ୱିତୀୟ ପୁତ୍ର ହରିବନ୍ଧୁ ଜିଲ୍ଲା ତଥା ଓଡ଼ିଶାର ଶ୍ରମିକ ଶ୍ରେଣୀ ଏବଂ କମ୍ୟୁନିଷ୍ଟ ପାର୍ଟିର ଜଣେ ଅଗ୍ରଣୀ, ବଳିଷ୍ଠ ନେତା ଓ ମୁଖପାତ୍ର ରୂପେ ସ୍ୱୀକୃତି ଲାଭ କରିଥିଲେ । ୧୯୪୪-୪୫, ସ୍ୱାଧୀନତା ସଂଗ୍ରାମ ଚାଲିଥାଏ । ସାରା ଦେଶରେ ବିଦ୍ରୋହାଗ୍ନି । ଛାତ୍ର ସଂଘର ଡାକରା । ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଛାତ୍ର ସମାଜର ରଣ ହୁଙ୍କାର । ବ୍ରହ୍ମପୁରରେ ଛାତ୍ରସଂଘ ନେତୃତ୍ୱରେ ଚଡ଼ି ଉଠିଲା ଆନ୍ଦୋଳନ । ଗଞ୍ଜାମ ଜିଲ୍ଲାର ପ୍ରାୟ ସତୁରି ଭାଗ ଛାତ୍ର ଛାତ୍ର ସଂଘର ପତାକା ତଳେ ସଂଗଠିତ ହୋଇଥିଲେ ।

ସଦାନନ୍ଦ ମହାନ୍ତି, ବେଣୁ ଗୋପାଳ, ପି. ଭି. ରାଜୁ, ବିଶ୍ୱନାଥ ସାହୁ, ଦୁତିକୃଷ୍ଣ ପଣ୍ଡା ପ୍ରମୁଖଙ୍କ ସହିତ ୧୪ ବର୍ଷର ହରିବନ୍ଧୁ ଏହି ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇଥିଲେ ।

ହରିବନ୍ଧୁଙ୍କ ମା' ବ୍ରହ୍ମପୁରସ୍ଥ ତାଙ୍କ ମା ଘରକୁ ଚାଲି ଆସିଥିଲେ । ବାଳକ ହରିବନ୍ଧୁ ଜୀବିକାର୍ଜନ ପାଇଁ ଓଡ଼ିଶା ଷ୍ଟୁଡେଣ୍ଟ ଷ୍ଟୋରରେ ଏକ ଶ୍ରେଷ୍ଠ ଚାକିରିଟିଏ କରୁଥିଲେ । କିନ୍ତୁ ଦେଶଭକ୍ତ ପ୍ରଧାନ ଶିକ୍ଷକ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟଙ୍କ ପ୍ରେରଣାରେ ସେ ଚାକିରି ଛାଡ଼ି ମ୍ୟୁନିସିପାଲ୍ ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କରନ୍ତି । ସ୍ୱର୍ଗତ ଆଚାର୍ଯ୍ୟହିଁ ଛାତ୍ର ହରିବନ୍ଧୁଙ୍କ ଚିନ୍ତାଧାରାରେ ଦେଶ ପ୍ରେମର ବହ୍ନି ଜାଳିଦେଲେ ।

କେବଳ ଛାତ୍ର ସଂଘରେ ସେ ସକ୍ରିୟ ହୋଇ ଉଠିଲେ ନୁହେଁ, ୧୯୪୬ ବେଳକୁ କମ୍ୟୁନିଷ୍ଟ ପାର୍ଟି ଭିତରକୁ ଆସିଗଲେ । ମାର୍କସ୍‌ବାଦୀ-ଲେନିନ୍‌ବାଦୀ ସାହିତ୍ୟ ପୁସ୍ତକ ଯୋଗାନ୍ତି । ଅଳ୍ପ ଶିକ୍ଷିତ କିନ୍ତୁ ବିଶିଷ୍ଟ ସାଥୀ ତଥା ସ୍ୱାଧୀନତା ସଂଗ୍ରାମର ଜଣେ ଯୋଦ୍ଧା ନରସିଂହ ପାତ୍ର, ସାଥୀ ହରିବନ୍ଧୁଙ୍କ ଭାଷାରେ "ତାଙ୍କ କର୍ମନିଷ୍ଠା, ପ୍ରତ୍ୟୟ ଓ ଉଚ୍ଚଶିକ୍ଷା ନଥାଇ ବି ମାର୍କସ୍‌ବାଦୀ-ଲେନିନ୍‌ବାଦୀ ତତ୍ତ୍ୱାବଳୀର ବ୍ୟାଖ୍ୟା ଯୁବକମାନଙ୍କୁ ମୁଗ୍ଧ ଆକୃଷ୍ଟ କଲା । ଅନ୍ୟମାନଙ୍କ ସଙ୍ଗରେ ମୁଁ ହେଲି କମ୍ୟୁନିଷ୍ଟ" ।

ଏକ ଝଡ଼ଝଞ୍ଜାମୟ, ତ୍ୟାଗପୂର୍ଣ୍ଣ, ବିଶ୍ରାମ ବିହୀନ ବିପ୍ଳବୀ ଜୀବନ ତାଙ୍କ ପାଇଁ ଥୁଆ ହୋଇଗଲା । ତେଲେଙ୍ଗାନା ଭାବରେ ବ୍ରହ୍ମପୁରରେ ଶ୍ରମିକ ଆନ୍ଦୋଳନ ଆରମ୍ଭ କରୁ କରୁ ଆସିଗଲା ଡାକରଡ଼ାରେ ମହତାବ ସରକାରଙ୍କ ନିର୍ମମ ଗୁଳିକାଣ୍ଡ । ୧୯୪୮—ଛଅ ଜଣ ମରି ଶୋଇଗଲେ । ସବୁ କମ୍ୟୁନିଷ୍ଟଙ୍କୁ ଆତ୍ମ ଗୋପନ କରିବାକୁ ପଡ଼ିଲା । ଧରା ହେଲେ ଜେଲ୍ । ବାହାରେ ରହିଲେ ଜମିଦାର ଓ ସାହୁକାରଙ୍କ ଶୋଷଣ ବିରୁଦ୍ଧରେ ଚାଲିଥିବା ସଂଗ୍ରାମ । ଅନ୍ୟମାନଙ୍କ ସାଙ୍ଗକୁ ହରିବନ୍ଧୁ ମଧ୍ୟ ରହିଲେ ଅଜ୍ଞାତ ବାସରେ ।

୧୯୫୦ ରେ ସାଥୀ ହରିବନ୍ଧୁଙ୍କ ନାମରେ ଗିରଫ ପରୱାନା ଜାରିହେଲା । ଧରା ନପଡ଼ିଲେ ଘର କ୍ରୋକ ଏବଂ ୫୦୦ ଟଙ୍କା ଜରିମାନା । ତାଙ୍କ ଘରୁ ଜବରଦସ୍ତ ଆଦାୟ ହେଲା । ମା ପୁଅର ଶୁଭ ମନାସି ଧାର ଉଧାର କରି ୫ଶହ ଟଙ୍କା ପୁଲିସଠାରେ ବାନ୍ଧି ଦେଲେ ସତ କିନ୍ତୁ ଶେଷରେ ତାଙ୍କୁ ଗିରଫ କରି ନିଆଗଲା । ବ୍ରହ୍ମପୁର ଜେଲ୍‌ଖାନାରେ ଦେଢ଼ବର୍ଷ ବ୍ୟାପି ପ୍ରଥମ ଦଫା କାରାବାସ । ଗଞ୍ଜାମ ରୟତ ଆନ୍ଦୋଳନର ଆଖିର ପିତୁଳା ଗୋବିନ୍ଦ ପ୍ରଧାନ, ସାଧୁଚରଣ ମହାନ୍ତି, ହରିହର ଦାଶ, ସଦାନନ୍ଦ ମହାନ୍ତି, ମାୟାଧର ପୁରୋହିତ ଏବଂ ଶେରଗଡ଼ର ବହୁ ସାଥୀଙ୍କ ସଙ୍ଗେ ଜେଲଖାନାରେ ଅନଶନ ସତ୍ୟାଗ୍ରହରେ ଯୋଗଦେଇଥିଲେ ସେ । ହରିବନ୍ଧୁ ୨୭ ଦିନ କାଳ ଅନଶନରେ ବସିଥିଲେ ।

Digitized by srujanika@gmail.com

୧୯୪୮ରେ ଅଜ୍ଞାତବାସରେ ଥିବା ବେଳେ ଧରାପଡ଼ିଯାଇ ପୋଲିସଙ୍କ ଦ୍ୱାରା ବନ୍ଦୀ ହୋଇ ବ୍ରହ୍ମପୁର ପୋଲିସ ଷ୍ଟେସନକୁ ଚାଲାଣ ହେଉଥିଲେ । ଅସୀମ ଧୈର୍ଯ୍ୟ, ସାହାସ ଓ ବୀରତ୍ୱରେ ଭରା ହରିବନ୍ଧୁଙ୍କ ଯୁବ ପ୍ରାଣ ବିଦ୍ରୋହ କରି ଉଠିଲା । ପୋଲିସ ତାଙ୍କ ଅଣ୍ଟାରେ ଦଉଡ଼ି ବାନ୍ଧି ରାସ୍ତାରେ ଚଲାଇ ଚଲାଇ ନେଉଥାଆନ୍ତି । ଯେମିତି ହରିଡ଼ାଖଣ୍ଡି ହ୍ରଦ ଆସିଲା, କହିଲେ "ଝାଡ଼ାଯିବି" । ସେମିତି ଦଉଡ଼ିବନ୍ଧା ହୋଇ ମିଛିମିଛିକା ଝାଡ଼ା ଗଲେ । ପାଣି ନେବାକୁ ହ୍ରଦକୁ ଆସିଲେ । ହ୍ରଦର ଲମ୍ବ ପାଖାପାଖି ଏକ କିଲୋମିଟର । ହ୍ରଦପାଖ ଧୀବର ଜାଲଫିରି ଦଳ । ଏମିତି ବୁଡ଼ାଟିଏ ଦେଲେ ଯେ, ପୁଲିସ ବାଲା ଏକୂଳରେ ଖୋଜା ଖୋଜିରେ ବ୍ୟସ୍ତ । ଅଗାଧ ଗାଧ ପାଣି, ମାରାତ୍ମକ ଦଳ ତଳେ ତଳେ ପାଣି ଭିତରେ ପହଁରି ପହଁରି କିଲୋମିଟର ଦୂର ଆରକୂଳରେ ବାହାରିଲେ ହରିବନ୍ଧୁ । ଆଖି ଥାଉ ଥାଉ ଅନ୍ଧ ବନିଗଲେ ପୁଲିସ । ହରିବନ୍ଧୁ ପୁଣି ଅଜ୍ଞାତବାସକୁ ଗଲେ ।

କୃଷକ ସଂଘ, ବୁଣାଳୀ ସଂଘ, କୈବର୍ତ୍ତ ସଂଘ, ରାଜମିସ୍ତ୍ରୀ ସଂଘ, ଶିକ୍ଷକ ସଂଘ ସହିତ ସଂଶ୍ଳିଷ୍ଟ ହୋଇ ଗଞ୍ଜାମ ଜିଲ୍ଲାରେ ଜନସାଧାରଣ ଏକ ଶକ୍ତିଶାଳୀ ସାମ୍ରାଜ୍ୟବାଦ ବିରୋଧି, ସାମନ୍ତବାଦ ବିରୋଧୀ, ଏବଂ ଶୋଷଣ ଅତ୍ୟାଚାର ବିରୋଧି ଆନ୍ଦୋଳନ ଗଢ଼ି ଥିଲେ । ସେଥିରେ ସାଥୀ ହରିବନ୍ଧୁଙ୍କର ବୈପ୍ଳବିକ ଭୂମିକା ଚିର ସ୍ମରଣୀୟ । ୧୯୪୪ରୁ ୫୪ ଗଞ୍ଜାମ ଜିଲ୍ଲା ଥିଲା ତାଙ୍କର କର୍ମକ୍ଷେତ୍ର ।

୧୯୫୭ ବେଳକୁ ହରିବନ୍ଧୁ ଆହୁରି ବୈପ୍ଳବିକ ବ୍ରତ ନେଇ ବାହାରିପଡ଼ିଲେ ! ଶ୍ରମିକ ଶ୍ରେଣୀର ଆନ୍ଦୋଳନରେ ଝାସ ଦେଲେ । ବଡ଼ବିଲରେ ଖଣି ଶ୍ରମିକ, ଆଦିବାସୀ, ହରିଜନଙ୍କ ଉପରେ ଓଡ଼ିଶା ଓ ବିଳାସପୁରରେ ଅକଥନୀୟ ଶୋଷଣ ନିର୍ଯ୍ୟାତନା । ସିରାଜଉଦ୍ଦିନ୍ ପରି ଖଣିମାଲିକଙ୍କର ଏବଂ ରାଜ୍ୟରେ ପ୍ରତିଷ୍ଠିତ ଦେଶୀ ସରକାରଙ୍କର କ୍ରୋଧ । ହରିବନ୍ଧୁଙ୍କୁ ମିଥ୍ୟା ହତ୍ୟା ଓ ଷଡ଼ଯନ୍ତ୍ର ମକଦ୍ଦମାରେ ଜଡ଼ିତ କରାଗଲା । ତାଙ୍କୁ ଫାସି ହୁକୁମ ହୋଇଗଲା । ୩୦୨ ଓ ୧୨୦ ଦଫାରେ । ହାଇକୋର୍ଟକୁ ଗଲା ମକଦ୍ଦମାର ଅପିଲ ବିଚାର । ହରିବନ୍ଧୁ ବଞ୍ଚିଲେ ଶ୍ରମିକ ଶ୍ରେଣୀର ସଂଗଠନ, ଆନ୍ଦୋଳନର ପୁରୋଧା ହେବା ପାଇଁ ଶେଷ ନିଶ୍ୱାସ ଥିଲା ପର୍ଯ୍ୟନ୍ତ ।

ବଡ଼ବିଲ ଯୋଡ଼ା ଖଣି ଶ୍ରମିକଙ୍କର କେବଳ ସେ ସଂଗଠକ ଥିଲେ ନୁହେଁ । ମାଟିକାମେଡ଼ାର କଳିଙ୍ଗ ଆଇରନ୍ ଓ୍ୱାର୍କରସ୍ ୟୁନିୟନ, ଝାରସୁଗୁଡ଼ାର ସୂତାକଳ, ବ୍ରଜରାଜନଗରର କାଗଜକଳ, ରାମପୁର କୋଇଲାଖଣି, କାଂସ ବାହାଲ ଉତ୍କଳ ମେସିନାରିଜ୍ ଏମିତି ବହୁ ଲଢ଼ୁଆ ଶ୍ରମିକ ସଂଗଠନର ନେତୃତ୍ୱକାରୀ ଭୂମିକା ନେଇଥିଲେ ।

୧୯୬୨ ରେ ଚୀନ ଆକ୍ରମଣ ବେଳେ ରାଜ୍ୟର ଅନ୍ୟ କମ୍ୟୁନିଷ୍ଟ ନେତାମାନଙ୍କ ସହିତ ହରିବନ୍ଧୁଙ୍କୁ ମଧ୍ୟ ଜେଲ୍‌ଖାନାରେ ଆବଦ୍ଧ କରାଯାଇଥିଲା ।

ଘର ନାହିଁ, ଦ୍ୱାର ନାହିଁ, ଠିକ୍ ଠିକଣା ନାହିଁ । ତଥାପି ବୈପ୍ଳବିକ ଜୀବନରେ ସହାୟକ ହେବାଭଳି ଜୀବନ ସାଥୀଟିଏ ପାଇଲେ ସାଥୀ ହରିବନ୍ଧୁ । ବୌଦର ସ୍ୱାଧୀନତା ସଂଗ୍ରାମୀ ପ୍ରଗତିଶୀଳ ବୁଦ୍ଧିଜୀବୀ ପ୍ରହ୍ଲାଦ ବିଶି ଆଗଭର ହୋଇ ନିଜ କନ୍ୟା ଭାରତୀକୁ ହରିବନ୍ଧୁଙ୍କ ସହିତ ବୈବାହିକ ସୂତ୍ରରେ ଆବଦ୍ଧ କଲେ ।

ସାଥୀ ହରିବନ୍ଧୁ ବେହେରା ରାଜ୍ୟ ଏ.ଆଇ.ଟି.ୟୁ.ସି.ର ସାଧାରଣ ସମ୍ପାଦକ ଏବଂ ସର୍ବ ଭାରତୀୟ କର୍ମକର୍ତ୍ତା ହୋଇଥିଲେ । ସେ ଦୀର୍ଘଦିନ ଧରି ଉତ୍କଳ ରାଜ୍ୟ ପରିଷଦ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ରାଜ୍ୟ କାର୍ଯ୍ୟକାରୀ କମିଟି ଓ ରାଜ୍ୟ ସମ୍ପାଦକ ମଣ୍ଡଳୀର ମଧ୍ୟ ସଦସ୍ୟ ଥିଲେ । କର୍କଟ ରୋଗରେ ପୀଡ଼ିତ ହୋଇ ୧୯୮୪ ଅକ୍ଟୋବର ୨୫ ରେ ସେ ଆଖି ବୁଜିଲେ । ଗଞ୍ଜାମ ଜିଲ୍ଲା ତଥା ରାଜ୍ୟରେ ଅନ୍ୟତ୍ର ସମସ୍ତଙ୍କ ପାଇଁ ସାଥୀ ହରିବନ୍ଧୁଙ୍କର ସଂଗ୍ରାମୀ ଜୀବନ ସଦା ଆଦର୍ଶ ସ୍ଥାନୀୟ ଓ ଚିରସ୍ମରଣୀୟ ହୋଇ ରହିବ ।



Digitized by srujanika@gmail.com

# କମ୍ରେଡ୍ ସାଧୁଚରଣ ମହାନ୍ତି

ଓଡ଼ିଶାର ରାଜନୈତିକ ଜୀବନରେ ତଥା ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାର କୃଷୀ ଆନ୍ଦୋଳନର ଜଣେ ଧୁରୀଣ ବିପ୍ଳବୀ ନେତା ଥିଲେ ସାଧୁଚରଣ ମହାନ୍ତି ।

ପୁରୀ ଜିଲ୍ଲା ପିପିଲି ଥାନା କୋଠବାଡ଼ ଗ୍ରାମରେ କମ୍ରେଡ୍ ସାଧୁଚରଣ ମହାନ୍ତିଙ୍କ ଜନ୍ମ । ୧୯୨୧ ସାଲରେ ଗାନ୍ଧିଜୀଙ୍କ ଆହ୍ୱାନରେ କଲେଜ ପଢ଼ା ଛାଡ଼ି ଯେଉଁ କେତେକ ଛାତ୍ର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରେ ସାଧୁବାବୁ ଅନ୍ୟତମ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସହକର୍ମୀ ହିସାବରେ ଗ୍ରାମ୍ୟ ସ୍ୱରାଜ ଆନ୍ଦୋଳନରେ ସାମିଲ ହେଲେ । ପ୍ରଥମେ ପୁରୀରୁ ପ୍ରକାଶିତ 'ସମାଜ' ର ସଂପାଦନାରେ ଗୋପବନ୍ଧୁ ଦାସଙ୍କ ସହ ସଂପୃକ୍ତ ହେଲେ । ସେ ଅତି ଜନପ୍ରିୟ ନେତା ଥିବାଯୋଗୁଁ ୧୯୩୭ ରେ ପୁରୀଜିଲ୍ଲା ବୋର୍ଡ ନିର୍ବାଚନରେ ଲୋକମାନେ ଆଚାର୍ଯ୍ୟ ହରିହର ଦାଶଙ୍କୁ ଭୋଟ ନଦେଇ ତାଙ୍କୁ ନିର୍ବାଚିତ କରିଥିଲେ । ଓଡ଼ିଶାରେ ଆଦ୍ୟ ତିରିଶ ଦଶକରେ ସ୍ୱାଧୀନତା ସଂଗ୍ରାମ କାଳରେ ଜନ୍ମ ନେଲା ବିରାଟ କୃଷୀ ଆନ୍ଦୋଳନ । ସ୍ୱାମୀ ସହଜାନନ୍ଦ ସରସ୍ୱତୀ, ମୋହନ ଲାଲ ଗୌତମ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ନବକୃଷ୍ଣ ଚୌଧୁରୀ ପ୍ରଭୃତିଙ୍କ ସଂପର୍କରେ ଆସି କଂଗ୍ରେସର ଜମିଦାରୀ ତୋଷଣ ନୀତି ବିରୁଦ୍ଧରେ ସଂଗ୍ରାମ କରି କଂଗ୍ରେସ ତ୍ୟାଗ କଲେ । ବାଛି ନେଲେ କୃଷୀ ଆନ୍ଦୋଳନ ଓ ତା ସଙ୍ଗରେ ଏକାନ୍ତ ଭାବରେ କମ୍ୟୁନିଷ୍ଟ ପାର୍ଟିକୁ ।

ଗଞ୍ଜାମର ସେ କାଳର କୃଷୀ ନେତା ଓ କମ୍ୟୁନିଷ୍ଟ ପାର୍ଟିର ନେତୃବର୍ଗ, ଯେଉଁମାନେ ଗଞ୍ଜାମରେ ମୁସ୍ତାଦାରୀ ପ୍ରଥା ବିରୋଧୀ ଆନ୍ଦୋଳନର କର୍ଣ୍ଣଧାର ଥିଲେ ତାହାର ଜଣେ ଦିଗଦର୍ଶକ, ସଂଗଠକ ହୋଇଥିଲେ ସାଧୁଚରଣ ମହାନ୍ତି । ମୁସ୍ତାଦାରୀ ପ୍ରଥା, ଜମିଦାରୀପ୍ରଥା ଉଚ୍ଛେଦ ଆନ୍ଦୋଳନରେ, ବିଶେଷତଃ ଛତ୍ରପୁର, ଆସିକା, ଶେରଗଡ଼ ଅଞ୍ଚଳର ଭାଗଚାଷୀ ଆନ୍ଦୋଳନ ବେଳେ ସେ ପ୍ରତି ଘରେ, ପ୍ରତି ଗାଁରେ ରାତିଦିନ କଟାଇ, ପଖାଳ ଶାଗ ଖାଇ, ଖଣ୍ଡିଆ ବାଡ଼ି ଟାଣି, କାନ୍ଧରେ ବ୍ୟାଗ ଝୁଲାଇ କୃଷୀମାନଙ୍କ ପ୍ରାଣର ପ୍ରାଣ ହୋଇଥିଲେ । ସେ ଥିଲେ ଉତ୍କଳ ପ୍ରାଦେଶିକ କୃଷକ ସଭାର ସଂପାଦକ, ସଂଗଠକ ଓ ଭାରତୀୟ କୃଷକ ସଭାର କାର୍ଯ୍ୟକାରୀ କମିଟିର ସଦସ୍ୟ, ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ଜଣେ ତୁଙ୍ଗ ନେତା ।

ସାଧୁବାବୁ ଯେଉଁ ଗଞ୍ଜାମ ମାଟିରେ ତାଙ୍କ ସାଂଗଠନିକ ପରାକାଷ୍ଠା ଦେଖାଇଥିଲେ, ସେହି ଗଞ୍ଜାମ ମାଟିରେ ୨୮ ସେପ୍ଟେମ୍ବର ୧୯୭୮ ରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।


**ସଂଗ୍ରାମୀ ଅଭିବାଦନ ସହ :**

**ଗଞ୍ଜାମ ଜିଲ୍ଲା ଘରୋଇ ମୋଟର କର୍ମଚାରୀ ସଂଘ**

**ନୂଆ ବସ୍‌ଷ୍ଟାଣ୍ଡ, ବ୍ରହ୍ମପୁର**

**ଅବ୍ଦୁଲ ଫିରୋଜ**
ସଂପାଦକ

**ସନ୍ତୋଷ କୁମାର ମହାପାତ୍ର**
ସଭାପତି


Digitized by srujanika@gmail.com

ଶୁଭେଚ୍ଛା ସହ :

# ବିଜ୍ଞାପିତ ଅଞ୍ଚଳ ପରିଷଦ, ଛତ୍ରପୁର

ଜିଲ୍ଲା ମହକୁମାରେ ଅବସ୍ଥିତ ଛତ୍ରପୁର ସହରକୁ ଏକ ସୁନ୍ଦର ସହରରେ ପରିଣତ କରିବା ଆମର ସଂକଳ୍ପ ।

**ଆମ ପ୍ରଗତି—**

୧ । ବସ୍‌ଷ୍ଟାଣ୍ଡ ଉନ୍ନତି କରଣ ।
୨ । ପିଲବନ୍ଧ ପାର୍କ ନିର୍ମାଣ ।
୩ । ଶିକାପଲ୍ଲୀ ଠାରେ ଟାଉନ ହଲ ତଥା କଲ୍ୟାଣ ମଣ୍ଡପ ନିର୍ମାଣ ।
୪ । ବସ୍‌ଷ୍ଟାଣ୍ଡ କଡରେ ସୁଲଭ ଶୌଚାଳୟ ନିର୍ମାଣ ।
୫ । ବିଭିନ୍ନ ଇତରବସ୍ତୀ ଅଞ୍ଚଳରେ ୮ ଟିଗୋଟି ମହିଳା ଗୋଷ୍ଠୀ କେନ୍ଦ୍ର ନିର୍ମାଣ ।
୬ । ଦୈନିକ ବଜାର ଓ ସାପ୍ତାହିକ ବଜାର ଉନ୍ନତି କରଣ ।
୭ । ବିଭିନ୍ନ ବଜାର କଡ଼ରେ ମୋଟ ୩୨ ଗୋଟି ଦୋକାନ ଗୃହ ନିର୍ମାଣ ।
୮ । ସମସ୍ତ ହରିଜନ ସାହିରେ ସିମେଣ୍ଟ ରାସ୍ତା ନିର୍ମାଣ ।
୯ । ସମସ୍ତ ଓ୍ୱାର୍ଡରେ ରାସ୍ତା ଓ ନାଳର ଉନ୍ନତି କରଣ ।
୧୦ । ୪୦ ଗୋଟି ସୋଡ଼ିୟମ ଲ୍ୟାମ୍ପ, ୬୦ ଗୋଟି ବାଲ୍‌ବଲାଇଟ୍ ଫିଟିଂ ଯୋଗାଣ ।
୧୧ । ୫୮ ଗୋଟି ନୂତନ ଷ୍ଟାଣ୍ଡ ପୋଷ୍ଟ ନିର୍ମାଣ ।
୧୨ । ପ୍ରାୟ ଟ: ୩୦,୦୦,୦୦୦ ଲକ୍ଷ ବ୍ୟୟରେ ୩ ଇଞ୍ଚ ପାଇପ୍ ଲାଇନ୍‌କୁ ୬ ଇଞ୍ଚ ପାଇପ୍ ଲାଇନ୍‌ରେ ପରିଣତ ଓ ୬୦ କି: ଓ୍ୱା: ପମ୍ପ ସ୍ଥାପନ ।
୧୩ । ଏକ ଟାଉନ୍ ବସ୍ ପ୍ରଚଳନ ।
୧୪ । ଏକ ପାଣି ଟେଙ୍କରରେ ପାନୀୟ ଜଳ ଯୋଗାଣ ।
୧୫ । ଅଫିସ୍ ଗୃହ ସମ୍ପ୍ରସାରଣ ।
୧୬ । ମହିଳା ସମିତି ମାଧ୍ୟମରେ ମହିଳାମାନଙ୍କ ମଧ୍ୟରେ ସଚେତନା ସୃଷ୍ଟି ।

---

**ଆମର ଆଗାମୀ ପରିକଳ୍ପନା**

୧ । ଆଇ.ଡ଼ି.ଏସ୍.ଏମ୍.ଟି. ପ୍ରକଳ୍ପ ମାଧ୍ୟମରେ ଦୈନିକ ବଜାରଠାରେ ସୁପର ମାର୍କେଟ ନିର୍ମାଣ, ଅନ୍ୟ ଏକ କଲ୍ୟାଣ ମଣ୍ଡପ ନିର୍ମାଣ, ସାପ୍ତାହିକ ବଜାର ଉନ୍ନତିକରଣ, ଟୁରିଷ୍ଟ ଲଜ ନିର୍ମାଣ, ଷ୍ଟେସନ ଠାରୁ ବସ୍‌ଷ୍ଟାଣ୍ଡ ରାସ୍ତା ଉନ୍ନତିକରଣ, ୧୦୦ ବଖରା ଦୋକାନ ଗୃହ ନିର୍ମାଣ, ପିଲବନ୍ଧରେ ବୋଟ ଚାଳନା, ରାସ୍ତାକଡ ବୃକ୍ଷ ରୋପଣ, ଇତ୍ୟାଦି ଉନ୍ନୟନ ମୂଳକ କାର୍ଯ୍ୟକରି ସହରକୁ ଏକ ସୁନ୍ଦର ସହରରେ ପରିଣତ କରିବା ପରିକଳ୍ପନା ରହିଛି ।

**ଶ୍ରୀ ଦୁର୍ଯ୍ୟୋଧନ ସାହୁ**
ନଗରପାଳ

**ଶ୍ରୀ ଜି ଦିବାକର ରାଓ**
ତଥା **ସଭ୍ୟ ଓ ସଭ୍ୟା ବୃନ୍ଦ**

**ଶ୍ରୀ ଧ୍ରୁବଚରଣ ସେଠୀ**
କାର୍ଯ୍ୟନିର୍ବାହୀ ଅଧିକାରୀ

Digitized by srujanika@gmail.com

# କମ୍ରେଡ୍ ଗୋବିନ୍ଦ ପ୍ରଧାନ



କମ୍ରେଡ୍ ଗୋବିନ୍ଦ ପ୍ରଧାନ ଗଞ୍ଜାମ ଜିଲ୍ଲାର ଟାକରଡ଼ା ଗ୍ରାମରେ ୧୯୦୭ ମଇ ୨୧ ତାରିଖରେ ଏକ ଧନୀ ଚାଷୀ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ବଳରାମ ପ୍ରଧାନ ଥିଲେ ଶେରଗଡ଼ ଜମିଦାରୀରେ ଜଣେ ମୁଖ୍ୟ କାରପଟଦାର । ତାଙ୍କର ଦୁଇପୁତ୍ର ମଧ୍ୟରୁ ସାଥୀ ଗୋବିନ୍ଦ ପ୍ରଧାନ ଜ୍ୟେଷ୍ଠ ଓ ସାଥୀ ରାଧାକୃଷ୍ଣ ପ୍ରଧାନ କନିଷ୍ଠ ।

୧୯୨୨ ରୁ ୧୯୨୯ ପର୍ଯ୍ୟନ୍ତ ଗୋବିନ୍ଦ ବାବୁ କୃଷିକାର୍ଯ୍ୟ ସହିତ ଶେରଗଡ଼ ଜମିଦାରଙ୍କ ନଅର ପରିଚାଳନା ପାଇଁ ଅନରାରି କଲ୍‌ଦାର ରୂପେ କାର୍ଯ୍ୟ କରିଥିଲେ । ଏହି ସମୟରେ ତାଙ୍କର ଗୃହ ଶିକ୍ଷକ ଶ୍ରୀ ଛବିଲାଲ ପଟ୍ଟନାୟକଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ କଂଗ୍ରେସରେ ଯୋଗ ଦେଲେ । ଭାରତୀୟ ଜାତୀୟ କଂଗ୍ରେସର ୧୯୨୮ କଲିକତା ଅଧିବେଶନ ଓ ୧୯୩୧ କରାଚି ଅଧିବେଶନରେ ଯୋଗ ଦେଇଥିଲେ । ୧୯୨୫ ରୁ ୧୯୩୦ ମଧ୍ୟରେ ସେ ଥରେ ତାଲୁକା ବୋର୍ଡ ଓ ଆଉ ଥରେ ଜିଲ୍ଲା ବୋର୍ଡକୁ ସଭ୍ୟଭାବେ ନିର୍ବାଚିତ ହୋଇଥିଲେ ।

୧୯୩୨ ଗୋଲଟେବୁଲ ବୈଠକ ବିଫଳ ହେଲାପରେ ବଡଲାଟ ଉଇଲିଙ୍ଗଡ଼ନଙ୍କ ନେତୃତ୍ୱରେ ଯେଉଁ ଆକ୍ରମଣ ଚାଲିଲା ସେଥିରେ ଗିରଫ ହୋଇ ତିନୋଟି ମକଦ୍ଦମାରେ ୩ବର୍ଷ ସଶ୍ରମ କାରାଦଣ୍ଡ ଓ ୧୫ଶହ ଟଙ୍କା ଜୋରିମାନା । କିନ୍ତୁ ୧ବର୍ଷ ୮ ମାସ ପରେ ଆଇନ ଅମାନ୍ୟ ଆନ୍ଦୋଳନ ଥିମେଇ ଯିବାରୁ ଜେଲରୁ ଖଲାସ ହେଲେ । ବନ୍ଦୀଶାଳାରୁ ଫେରି ୧୯୩୪-୩୫ ରେ ଗଞ୍ଜାମ ଜିଲ୍ଲା କଂଗ୍ରେସର ସଭାପତି ହେଲେ । ୧୯୩୭ ରେ ଆସିକା, ସୋରଡ଼ା ନିର୍ବାଚନମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଭାବେ ଧରାକୋଟ ଯୁବରାଜ ବ୍ରଜକିଶୋର ସିଂହଦେବଙ୍କ ସହିତ ନିର୍ବାଚନରେ ଲଢ଼ି ବିଜୟ ହାସଲ କଲେ ।

ଗଞ୍ଜାମର ତତ୍‌କାଳୀନ ରୟତ ନେତା ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ଜମିଦାରୀ ରୟତ ସଂଘ ଗୋବିନ୍ଦ ବାବୁ ଶେରଗଡ଼ ଅଞ୍ଚଳରେ ସଂଗଠିତ କଲେ । ୧୯୩୮ ସାଲରେ ଶେରଗଡ଼ ଠାରେ ପ୍ରଥମ କୃଷକ ସମ୍ମିଳନୀ ସାଥୀ ଗୋବିନ୍ଦ ପ୍ରଧାନଙ୍କ ନେତୃତ୍ୱରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଶ୍ରୀମତୀ ମାଳତୀ ଚୌଧୁରୀ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ ଯୋଗ ଦେଇଥିଲେ । ସଭାରେ ମୁସ୍ତାଦାରୀ ପ୍ରଥାର ଉଚ୍ଛେଦ, ହେତା ଭୂମି ରଇତର ଇତ୍ୟାଦି ଦାବୀମାନଙ୍କ ଉପରେ ଆନ୍ଦୋଳନ କରିବା ପାଇଁ ପ୍ରସ୍ତାବମାନ ଗୃହୀତ ହୋଇଥିଲା । ଏଥିରେ କ୍ଷୁବ୍ଧ ହୋଇ ଶେରଗଡ଼, ଧରାକୋଟ, ବଡଗଡ଼, ସାନଖେମୁଣ୍ଡି ପ୍ରଭୃତି ଜମିଦାରମାନେ ସଂଗଠିତ ହୋଇ ଚାଷୀମାନଙ୍କ ଉପରେ ଶହ ଶହ ମକଦ୍ଦମାମାନ କଲେ । ଚାଷୀମାନେ ମକଦ୍ଦମାରେ ହନ୍ତସନ୍ତ ହୋଇ ପଡ଼ିଲେ । ସେତେବେଳକାର ଓଡ଼ିଶାର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାଶଙ୍କୁ ଯେତେ ନିବେଦନ କଲେ ମଧ୍ୟ ସେ ଚାଷୀମାନଙ୍କୁ ମକଦ୍ଦମାରୁ ଉଦ୍ଧାର କରିବା ପାଇଁ କୌଣସି ଉଦ୍ୟମ କଲେ ନାହିଁ । ଏଥିରେ ଗୋବିନ୍ଦ ବାବୁ ବ୍ୟତିବ୍ୟସ୍ତ ହୋଇ ଚାଷୀମାନଙ୍କ ଦାବୀ ହାସଲ ପାଇଁ ସଂଗଠନରେ ଲାଗିପଡ଼ିଲେ । ନବକୃଷ୍ଣ ଚୌଧୁରୀ, ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ, ସାଧୁଚରଣ ମହାନ୍ତି, ଗୁରୁଚରଣ ପଟ୍ଟନାୟକ ପ୍ରମୁଖଙ୍କ ସହିତ ସମ୍ପର୍କ ସ୍ଥାପନ କରି କୃଷକ ଆନ୍ଦୋଳନ ଓ ସଂଗଠନକୁ 'ବାମ ମୋଡ଼' ଦେଲେ । ୧୯୪୩ ରେ ଜମିଦାରୀ ରୟତ ସଭାକୁ ଭାଙ୍ଗିଦେଇ କୃଷକ ସଭା ଗଠନ କଲେ ଏବଂ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ । କେସ୍ ବାଟ ଛାଡ଼ି ଆନ୍ଦୋଳନ ଓ ଲଢ଼େଇର ବାଟରେ ଆଗେଇ ଆସିଲେ ।

୧୯୪୩ ସାଲରେ ଶେରଗଡ଼ରେ କୃଷକ ସମ୍ମିଳନୀ ହେଲା । ଏଥିରେ ଓଡ଼ିଶାର କମ୍ୟୁନିଷ୍ଟ ପାର୍ଟି ସମ୍ପାଦକ ସାଥୀ ଭଗବତୀ ଚରଣ ପାଣିଗ୍ରାହୀ ସଭାପତିତ୍ୱ କରିଥିଲେ । ଭାରତୀୟ କୃଷକ ସଭାର ଗଞ୍ଜାମ ଶାଖା ପ୍ରତିଷ୍ଠା ହେଲା । ତାଙ୍କର ନେତୃତ୍ୱରେ କୃଷକମାନଙ୍କର ଦାବୀଗୁଡ଼ିକ ଉପରେ ଲଢ଼ୁଆ ଆନ୍ଦୋଳନ ଗଢ଼ି ଉଠିଲା । ତାପରେ ଗଞ୍ଜାମ ଜିଲ୍ଲାରେ କମ୍ୟୁନିଷ୍ଟ ସଂଗଠନ ଗଢ଼ି ଉଠିଲା । ଜିଲ୍ଲାର ବିଭିନ୍ନ ସ୍ଥାନରେ କମ୍ୟୁନିଷ୍ଟ ପାର୍ଟିର ଶିକ୍ଷା ଶିବିର ଲାଲସିଂଗି ଓ ଶେରଗଡ଼ ଠାରେ ଅନୁଷ୍ଠିତ ହେଲା । ଜିଲ୍ଲାର ବହୁ ଦେଶପ୍ରେମୀ, ସମାଜସେବୀ, ନେତୃବୃନ୍ଦ ଧିରେ ଧିରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ସାଥୀ ପରୀକ୍ଷିତ ବିଶ୍ୱାଳ

Digitized by srujanika@gmail.com

କଲିକତାରୁ ଆସି ଏହି ଦଳର କାର୍ଯ୍ୟରେ ସାମିଲ ହେଲେ । ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ହରିହର ଦାସ, ସାଥୀ ଅନନ୍ତ ପାତ୍ର, ସାଥୀ ସୂର୍ଯ୍ୟନାରାୟଣ ଆଚାରୀ, ସାଥୀ ଜନାର୍ଦ୍ଦନ ସିଂହ ଓ କମ୍ୟୁନିଷ୍ଟ ନେତା ସାଥୀ ବିଜୟ ଚନ୍ଦ୍ର ଦାସ ପ୍ରମୁଖ ଏକାଠି ହୋଇ ଜିଲ୍ଲାରେ କମ୍ୟୁନିଷ୍ଟ ପାର୍ଟି ଗଢ଼ି ତୋଳିବା ଦିଗରେ ଆଗେଇ ଆସିଥିଲେ । ଛାତ୍ର ସଂଘ, ଶ୍ରମିକ ସଂଘ, କୃଷକ ସଭା ଇତ୍ୟାଦି ସଂଗଠନ ଗଢ଼ି ସେମାନଙ୍କ ଦାବୀମାନଙ୍କ ଉପରେ ଲଢ଼ୁଆ ଆନ୍ଦୋଳନ ସଂଗଠିତ ହେଲା । ଏହା ଜିଲ୍ଲାର ବହୁ ଅଞ୍ଚଳକୁ ବ୍ୟାପିଲା । ଏହା ସଙ୍ଗେ ସଙ୍ଗେ କମ୍ୟୁନିଷ୍ଟ କର୍ମୀମାନେ ୧୯୪୨-୪୩ ରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ ବଞ୍ଚାଇବା ପାଇଁ ରିଲିଫ କାର୍ଯ୍ୟ ଓ ସଂଗ୍ରାମମାନଙ୍କରେ ସକ୍ରିୟ ଭାଗ ନେଲେ । ସକ୍ରିୟ ଯୁବ ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇ ଆସିଥିବା ଦୂତିକୃଷ୍ଣ ପଣ୍ଡା, ସଦାନନ୍ଦ ମହାନ୍ତି, ବିଶ୍ୱନାଥ ସାହୁ, ରଘୁନାଥ ପାତ୍ର, ବଂଶୀଧର ପଟ୍ଟନାୟକ ପ୍ରଭୃତି ଶତାଧିକ ଯୁବ-ଛାତ୍ର କର୍ମୀ ନେତୃତ୍ୱକୁ ଆସି ଗଣ ସଂଗଠନମାନଙ୍କ ଦାୟିତ୍ୱ ନେଇଥିଲେ । ତା' ଛଡ଼ା ଶେରଗଡ଼, ବଡଗଡ଼, ଧରାକୋଟ, ସାନଖେମୁଣ୍ଡି, ବଡ଼ଖେମୁଣ୍ଡି, ଦିଗପହଣ୍ଡି, ପୂର୍ବଖଣ୍ଡ, ଆସିକା, ବ୍ରହ୍ମପୁର ପ୍ରଭୃତି ଅଞ୍ଚଳରୁ ଶହ ଶହ କୃଷକ ଓ ଖଟିଖିଆ ଶ୍ରେଣୀର ନେତା ଓ କର୍ମୀମାନେ ଆନ୍ଦୋଳନ ଭିତରୁ ନେତୃତ୍ୱକୁ ଆସିଗଲେ ।

ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ହରିହର ଦାଶ, ସାଥୀ ଗୁରୁଚରଣ ପଟ୍ଟନାୟକ, ସାଥୀ ସାଧୁଚରଣ ମହାନ୍ତି ମିଳିତ ଭାବେ କର୍ମୀମାନଙ୍କୁ ସଂଗଠିତ କରି ବିଭିନ୍ନ ସମସ୍ୟା ଉପରେ ଆନ୍ଦୋଳନ ଗଢ଼ି ତୋଳିବା ପାଇଁ ଗାଁକୁ ଗାଁ ବୁଲି ବୁଲି ଲଢ଼ୁଆ ଆନ୍ଦୋଳନ ଗଢ଼ି ତୋଳିଲେ । ତାଙ୍କର ତ୍ୟାଗ, ନିଷ୍ଠା, ନିରଳସ ଓ ନିର୍ଭୀକ ନେତୃତ୍ୱ, ସରଳ ଜୀବନଯାପନ ଓ ବ୍ୟବହାର ଏବଂ ଲଗାତର କାର୍ଯ୍ୟ ଜିଲ୍ଲାର ହଜାର ହଜାର ଚାଷୀ, ମୂଲିଆ, ବୁଦ୍ଧିଜୀବୀ ଶ୍ରେଣୀର ଦେଶପ୍ରେମୀ ଜନସାଧାରଣଙ୍କୁ ଆକୃଷ୍ଟ କଲା । କମ୍ୟୁନିଷ୍ଟ ପାର୍ଟି ଜିଲ୍ଲାର ପ୍ରଧାନ ରାଜନୈତିକ ଦଳର ସ୍ଥାନ ଦଖଲ କଲା । ଅନ୍ୟ ପକ୍ଷରେ ଜମିଦାର, ମୁସ୍ତାଦାର, ଠିକାଦାରମାନେ ଏକାଠି ହୋଇ ଶାସନରେ ଥିବା କଂଗ୍ରେସ ଦଳସହ ଚକ୍ରାନ୍ତ କରି କମ୍ୟୁନିଷ୍ଟ ପାର୍ଟିର ଆନ୍ଦୋଳନ ଓ ସଂଗଠନ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଜମିଦାର, ମୁସ୍ତାଦାର ଓ ସାହୁକାରମାନଙ୍କର ଗୁଣ୍ଡାମାନେ କମ୍ୟୁନିଷ୍ଟ କର୍ମୀମାନଙ୍କ ଉପରେ ଶାରୀରିକ ଆକ୍ରମଣ କରି ଦମନ ଚଳାଇଲେ ଏବଂ ବହୁ ମିଥ୍ୟା ଫୌଜଦାରୀ ମକଦ୍ଦମାମାନ କରାଯାଇ ଆକ୍ରମଣର ନିଆଁ ଛୁଟାଇ ଦିଆଗଲା । ଏହାର ସଂଗଠିତ ପ୍ରତିରୋଧ ପାଇଁ ଏବଂ ମୁସ୍ତାଦାର, ଜମିଦାର ଓ ଇନାମଦାର ଉଚ୍ଛେଦ ପାଇଁ ଛୋଟ ଓ ମଧ୍ୟମ ଧରଣର ସଭା ପରେ ଆସିକା, ଟାକରଡ଼ା ଓ ବ୍ରହ୍ମପୁର ଠାରେ ଯଥାକ୍ରମେ ୧୫ ହଜାର, ୨୨ ହଜାର ଓ ୨୦ ହଜାର ଲୋକଙ୍କର ବଡ଼ ବଡ ସମ୍ମିଳନୀମାନ କ୍ରମାନ୍ୱୟରେ ୩ ବର୍ଷରେ ତିନୋଟି ଜନସମାବେଶ କରାଗଲା । ଏହା ଫଳରେ ୧୯୪୫ରେ ମୁସ୍ତାଦାରୀ ପ୍ରଥାର ଉଚ୍ଛେଦ ହେଲା । ୧୯୪୭ ରେ ଜମିଦାରମାନଙ୍କ ହେତା ଜମି ରୟତଙ୍କ ଦ୍ୱାରା ଦଖଲ ହେଲା । ଜମିଦାରୀ ଅଞ୍ଚଳରୁ ରୟତବାରି ଅଞ୍ଚଳକୁ ଓ ଗ୍ରାମାଞ୍ଚଳରୁ ସହରାଞ୍ଚଳକୁ ଆନ୍ଦୋଳନ ବ୍ୟାପିଲା । ଚାଷୀର ଜମି ହେଲା । ମୁହଁରେ ହସ ଫୁଟିଲା । ଚାଷୀର ଦାଣ୍ଡରେ ଖଣି ପଡ଼ିଲା । ଚାଷୀ ଦୁଇ ବେଳା ଖାଇବାକୁ ପାଇଲା । ପିଲା ପାଠ ପଢ଼ିଲା । ଏହା ପଛରେ ସାଥୀ ଗୋବିନ୍ଦ ପ୍ରଧାନଙ୍କ ବଳିଷ୍ଠ ନେତୃତ୍ୱ ଥିଲା । ସାଥୀ ଗୋବିନ୍ଦ ପ୍ରଧାନ ଚାଷୀ, ମୂଲିଆ, ଶ୍ରମିକ, ବୁଦ୍ଧିଜୀବୀ, ଛାତ୍ର, ଯୁବକ ସମସ୍ତ ଖଟିଖିଆ ଶ୍ରେଣୀର ଆଶା-ଆକାଂକ୍ଷାର ଲଢ଼ୁଆ ନେତା ଭାବେ ପ୍ରତିଷ୍ଠା ଲାଭ କରିପାରିଲେ । ତା'ପରେ ସ୍ଥାନୀୟ ନେତା ଓ କର୍ମୀଙ୍କ ଉପରେ ଦମନ ଓ ଗିରଫ ପରୱାନା ଏହି ଅନ୍ୟାୟର ପ୍ରତିବାଦ କରି ଆନ୍ଦୋଳନକୁ ଚାଲୁ ରଖିବା ପାଇଁ ପାର୍ଟି ଅଜ୍ଞାତବାସ ପାଇଁ ଡାକରା ଦେଲା । କେତେକ ସାଥୀ ଗିରଫ ହୋଇ ଜେଲକୁ ଗଲେ ଆଉ ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ହରିହର ଦାଶ ଓ ସାଥୀ ବଳି ପାତ୍ର ପ୍ରଭୃତି ଅଜ୍ଞାତବାସ ଗଲେ ।

ଏହି ସମୟ ମଧ୍ୟରେ ୧୯୪୮ ମଇ ମାସ ୨୪ ତାରିଖରେ ମହତାବ ସରକାର ଓ ଜମିଦାର ଷଡଯନ୍ତ୍ରରେ ପୋଲିସ ଫଉଜ ଟାକରଡ଼ା ଗ୍ରାମରେ ପଟି ପିଣ୍ଡାମାନଙ୍କରେ ବସିଥିବା ନିରୀହ ଚାଷୀ ମୂଲିଆ ପିଲାଙ୍କୁ ଟାଣି ନେଲେ । ସେଥିରେ ପ୍ରତିବାଦ ଗ୍ରାମବାସୀମାନେ ଶାନ୍ତିପୂର୍ଣ୍ଣ ଭାବେ କରିବା ସମୟରେ ପୋଲିସ ଫଉଜ ଆଖିବୁଜା ଗୁଳି ଚଳାଇଲେ । ଏହି ଗୁଳିରେ ଟାକରଡ଼ା ଗ୍ରାମର ୭ ଜଣ ସ୍ତ୍ରୀ ଓ ପୁରୁଷ ପ୍ରାଣ ହରାଇଲେ । ସୁବେଇନ, ୧୨ ବର୍ଷର ଝିଅ ହେମ, କଉଶଲ୍ୟା, ବୃଦ୍ଧ ବାଉରି ବରଡ଼, ବିହାସ ଓ ଯୁବକ ଅର୍ଜ୍ଜୁନ ବରଡ଼ ପ୍ରାଣ ହରାଇଲେ । ପ୍ରାୟ ୪୦/୫୦ ଜଣ ପର୍ଯ୍ୟନ୍ତ ଗୁଳିମାଡରେ ଘାଇଲା ହେଲେ । ଶହ ଶହ ଗିରଫ ହେଲେ ।

ଗୁଳିକାଣ୍ଡ ପରେ ଗୋବିନ୍ଦ ପ୍ରଧାନ ଓ ଅନ୍ୟାନ୍ୟ କମ୍ୟୁନିଷ୍ଟ ଓ କୃଷକ କର୍ମୀଙ୍କୁ ଗିରଫ କରିବା ପାଇଁ ଓ ଚାଷୀ ଆନ୍ଦୋଳନ ଦମନ ପାଇଁ ସରକାର ପିଟୁଣୀ ଟିକସ ବ୍ୟବସ୍ଥା ଗ୍ରହଣ କଲେ । ଏହାଦ୍ୱାରା ଶେରଗଡ ଅଞ୍ଚଳର ନିରୀହ

Digitized by srujanika@gmail.com

ଚାଷୀ ପରିବାରରେ ଘରେ ଘରେ ରଜଭର୍ ପୋଲିସ ପଶି ଅକଥନୀୟ ଅତ୍ୟାଚାର କଲେ । ଟିକସ ଆଦାୟ ବାହାନାରେ ଚାଷୀକୂଳକୁ ଧ୍ୱସ୍ତବିଧ୍ୱସ୍ତ କରାଇଲେ କିନ୍ତୁ ଗୋବିନ୍ଦ ବାବୁଙ୍କ ଅଭୟବାଣୀ ଶୁଣି ଚାଷୀମାନେ ସରକାରୀ ଅତ୍ୟାଚାରକୁ ଭ୍ରୂକ୍ଷେପ କଲେନାହିଁ । ୧୯୪୮ ରୁ ୧୯୫୦ ପର୍ଯ୍ୟନ୍ତ ସାଥୀ ଗୋବିନ୍ଦ ପ୍ରଧାନ ଦୁଇବର୍ଷ କାଳ ଅଜ୍ଞାତବାସରେ ରହିଥିଲେ । ପରେ ଧରା ହୋଇ ଜେଲକୁ ଗଲେ ଏବଂ ୧୯୫୦ ରୁ ୧୯୫୨ ପର୍ଯ୍ୟନ୍ତ ଜେଲରେ ରହିଲେ ।

୧୯୫୨ ସାଲରେ ସାଧାରଣ ନିର୍ବାଚନ ସରକାର ଘୋଷଣା କରିବାରୁ ସମସ୍ତ ରାଜନୈତିକ ବନ୍ଦୀଙ୍କୁ ସରକାର ଛାଡ଼ କରିଦେଲେ — ସାଥୀ ଗୋବିନ୍ଦ ବାବୁ ପାଟପୁର-ହିଞ୍ଜିଳି ନିର୍ବାଚନ ମଣ୍ଡଳୀ ପାଇଁ ଜେଲରୁ ପ୍ରାର୍ଥୀ ପତ୍ର ଦାଖଲ କରିଥିଲେ । ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ କଂଗ୍ରେସର କୌଣସି ନେତା ସାହସ କରି ନଥିଲେ । ବୃନ୍ଦାବନ ନାୟକ ପ୍ରତିଦ୍ୱନ୍ଦ୍ୱିତା କରି ବହୁ ଭୋଟରେ ପରାସ୍ତ ହେଲେ । ଗୋବିନ୍ଦ ବାବୁଙ୍କ ବିଜୟ ହେଲା । ବିଧାନସଭାରେ କମ୍ୟୁନିଷ୍ଟ ପାର୍ଟିର ନେତା ହେଲେ । ପୁଣି ୧୯୫୭ ରେ ଭଞ୍ଜନଗର ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ବିଧାୟକ ଭାବେ ସେ ବିଧାନସଭାରେ ଚାଷୀ ମୂଲିଆମାନଙ୍କ ସମସ୍ୟା ଦୃଢ଼ ଭାବେ ଉପସ୍ଥାପିତ କରୁଥିଲେ ।

୧୯୬୭ ନିର୍ବାଚନ ବେଳେ ଦୁର୍ଘଟଣାରେ ତାଙ୍କ ଗୋଡ଼ ଭାଙ୍ଗିଗଲା ଓ ସେହିଦିନ ଠାରୁ ଦ୍ରୁତଗତିରେ ସ୍ୱାସ୍ଥ୍ୟର ଅବନତି ଘଟିଲା । ୧୯୬୮ ରେ ଚିକିତ୍ସା ଲାଗି ସୋଭିଏତ୍ ରୁଷ ଗଲେ । ସେଠାରୁ ଫେରିବା ପରେ ପକ୍ଷାଘାତ ରୋଗରେ ଶଯ୍ୟା-ଶାୟୀ ହୋଇ ପଡ଼ିଲେ !

ସେ ଜାଣିଥିଲେ ତାଙ୍କର ଶେଷ ସମୟ ପାଖେଇ ଆସୁଛି । ସେ ପିଲାଙ୍କୁ କହି ଦେଇଥିଲେ, ଶେଷ ବେଳକୁ ମୋତେ ପାର୍ଟିର ଲାଲ ପତାକାରେ ଆବୃତ କରିଦେବ ! ସେଥିରେ ଯେପରି ତିଳେ ବିଳମ୍ବ ବା ବ୍ୟତିକ୍ରମ ନ ଘଟେ ସେଥିଲାଗି ସେ ନିଜେ ଲାଲ କନା କିଣି ଆଗରୁ ଘରେ ରଖିଥିଲେ । ମୃତ୍ୟୁ ପୂର୍ବରୁ ସେ କେତେଦିନ ସମ୍ପୂର୍ଣ୍ଣ ଅଜ୍ଞାନ ଅବସ୍ଥାରେ ରହିଥିଲେ । ତାଙ୍କର କନାରେ ଶେଷରେ ଲାଲ ପତାକା ତିଆରି ହେଲା । ତାକୁ ଛୁଇଁଲା ପରେ ଯାଇଁ ସେ ଶେଷ ନିଶ୍ୱାସ ତ୍ୟାଗ କଲେ । ଜୀବନ ଦେଇ ସେ ଯେଉଁ ଲାଲ ପତାକାକୁ ଊର୍ଦ୍ଧ୍ୱକୁ ଟେକି ରଖିଥିଲେ — ଏଥର ଶ୍ରମଜୀବୀ ମଣିଷର ସେହି ଲାଲପତାକା ତାଙ୍କର ସ୍ମୃତି ଓ ସାଧନାକୁ ଚିରନ୍ତନ କରି ରଖିବ ।


***With Revolutionary greetings from :***

**GANJAM & PHULBANI DISTRICT PRIVATE MOTOR TRANSPORT WORKERS UNION**

ASKA ROAD, BERHAMPUR

Kasinath Pradhan
*Secretary*

Santosh Kumar Mohapatro
*President*


Digitized by srujanika@gmail.com

# କମ୍ରେଡ଼୍ ବିଜୟ ଚନ୍ଦ୍ର ଦାସ



ଗତ ଚାଳିଶି ଦଶକରେ ଜାତୀୟ ମୁକ୍ତି ଆନ୍ଦୋଳନରେ ଗଞ୍ଜାମ ଜିଲ୍ଲାରୁ ଯେଉଁ କେତେକ ଶିକ୍ଷିତ ଯୁବକ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରେ ସାଥୀ ବିଜୟ ଚନ୍ଦ୍ର ଦାସ ଅନ୍ୟତମ । ଗଞ୍ଜାମ ଜିଲ୍ଲା ଘୁମୁସର ତାଲୁକା କାନକୁଟ୍ଟୁରୁ ଗ୍ରାମରେ ତାଙ୍କର ପିତା ଦୟାନିଧି ଦାସଙ୍କ ଜନ୍ମ । ସେ ଧରାକୋଟ ଜମିଦାରୀର ଦେଓ୍ୱାନ ଥିଲେ । ସେ ଡିଗ୍ରୀ ହାସଲ କରି ନଥିଲେ ମଧ୍ୟ ବଡ଼ ବିଦ୍ୱାନ ଥିଲେ । ଏଣୁ ବ୍ରିଟିଶ ସରକାର ତାଙ୍କୁ ଶିକ୍ଷା ବିଭାଗ ପରିଦର୍ଶକ ଭାବେ ନିଯୁକ୍ତି କରିଥିଲେ । କିନ୍ତୁ ସ୍ୱାଧୀନ ଚେତା ଦୟାନିଧି ବାବୁ ଚାକିରି ପଦ ତ୍ୟାଗକରି ବ୍ରହ୍ମପୁରରେ ଉତ୍କଳ ମୁଦ୍ରାର ବ୍ୟବସାୟ କଲେ । ସାଥୀ ବିଜୟ ଚନ୍ଦ୍ର ଦାସ ତାଙ୍କର ତୃତୀୟ ପୁତ୍ର । ବିଜୟ ବାବୁ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ଇଂରେଜୀ ଭାଷାରେ ସ୍ନାତକୋତ୍ତର ଡିଗ୍ରୀ ପ୍ରଥମ ଶ୍ରେଣୀରେ ସମ୍ମାନ ସହକାରେ ହାସଲ କରିଥିଲେ । ସେ ପ୍ରଫେସର ହୀରେନ୍ ମୁଖାର୍ଜି ଓ ପ୍ରଫେସର ହୁମାୟୁନ୍ କବୀରଙ୍କ ଅତିପ୍ରିୟ ଛାତ୍ର ଥିଲେ ଏବଂ ସେମାନଙ୍କ ସଂସ୍ପର୍ଶରେ ଆସି ବାମପନ୍ଥୀ ଚିନ୍ତାଧାରା ବା କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହେଲେ । ସେତେବେଳେ ସ୍ୱାଧୀନତା ଆନ୍ଦୋଳନ କହିଲେ ସୂତାକାଟିବା, ଲୁଣ ମାରିବାକୁ କହିବା, ବିଦେଶୀ ଜିନିଷ ବର୍ଜନ କରିବା, ନିଶା ନିବାରଣ ପାଇଁ ପିକେଟିଂ କରିବା କାମକୁ ବୁଝାଉଥାଏ ।

କୌଣସି ଗଣ ଆନ୍ଦୋଳନ ବିଶେଷ କରି କୃଷକ, ଶ୍ରମିକ, ଛାତ୍ର, ବୁଦ୍ଧିଜୀବୀ ଆଦି ମେହନତକାରୀ ଜନସାଧାରଣଙ୍କ ସଂଗଠନ ବା ସଂଗଠିତ ଆନ୍ଦୋଳନ ନଥିଲା । ଏଣୁ ପ୍ରଥମ ଥର ପାଇଁ ୧୯୩୭ ରେ ବିଜୟ ବାବୁଙ୍କ ନେତୃତ୍ୱରେ ବ୍ରହ୍ମପୁରରେ ଏ. ଆଇ. ଏସ୍. ଏଫ୍.ର ବିରାଟ ଛାତ୍ର ସମ୍ମିଳନୀ ହୋଇଥିଲା । ବହୁ ଜାତୀୟ ନେତା ଓ ବିଖ୍ୟାତ ବୁଦ୍ଧିଜୀବୀ ବୃନ୍ଦ ଏଥିରେ ଯୋଗଦେଇ ଉଦ୍‌ବୋଧନ ଦେଇଥିଲେ । ୧୯୩୯ ବେଳକୁ ଓଡ଼ିଶାର ଏକମାତ୍ର ମେଡ଼ିକାଲ କଲେଜ - କଟକ ମେଡିକାଲ କଲେଜ ପାଇଁ ଐତିହାସିକ ଛାତ୍ର ଆନ୍ଦୋଳନ ଦେଖାଦେଲା । ସାଥୀ ବିଜୟ ଚନ୍ଦ୍ର ଦାସ ସେତେବେଳକୁ ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସରେ ରହି ଆଇନ ଶିକ୍ଷା ଅଧ୍ୟୟନ କରୁଥାନ୍ତି । ମେଡ଼ିକଲ ଛାତ୍ର ଆନ୍ଦୋଳନରୁ ବିଜୟ ଦାସ ଅଲଗା ରହିବେ କିପରି ? ସାଥୀ ଅନନ୍ତ ପଟ୍ଟନାୟକ, ସାଥୀ ବିଶ୍ୱନାଥ ପଶାୟତ ପ୍ରଭୃତିଙ୍କ ଗହଣରେ ସାଥୀ ବିଜୟ ଚନ୍ଦ୍ର ଦାସ ନେତୃତ୍ୱକାରୀ ଭୂମିକା ଗ୍ରହଣ କଲେ । ସେତିକି ବେଳେ ଜାତୀୟ ସ୍ତରରୁ ଛାତ୍ରନେତା କମ୍ରେଡ଼୍ ବିଶ୍ୱନାଥ ମୁଖାର୍ଜିଙ୍କ ପ୍ରତ୍ୟକ୍ଷ ଯୋଗଦାନ ଓ ପରିଚାଳନାରେ ମେଡ଼ିକାଲ ଛାତ୍ର ଆନ୍ଦୋଳନରେ ବିଜୟ । ଏହି ଆନ୍ଦୋଳନ ପଛରେ ସୁବାଷ ଚଂଦ୍ର ବୋଷଙ୍କ ମଧ୍ୟ ଆଶୀର୍ବାଦ ରହିଥିଲା ।

କମ୍ରେଡ୍ ବିଜୟ ଚଂଦ୍ର ଦାସ କଟକରୁ ଫେରି ବ୍ରହ୍ମପୁର ତଥା ଗଞ୍ଜାମ ଜିଲ୍ଲାର କମ୍ୟୁନିଷ୍ଟ ପାର୍ଟି ଗଠନର ପ୍ରଥମ ଭିତ୍ତିଭୂମି ସ୍ଥାପନ କଲେ । ତାଙ୍କର ସଂଗ୍ରାମୀ ମନୋବୃତ୍ତି, ବିଚକ୍ଷଣ ଆଦର୍ଶଗତ ଯୁକ୍ତି, ଚିନ୍ତାଶୀଳ ଭାବଧାରା, ଅନର୍ଗଳ ବକ୍ତୃତା (ଇଂରେଜୀ ଓ ଓଡ଼ିଆରେ), ନିଷ୍କଳଙ୍କ ଜୀବନଯାପନ ବହୁ ବୁଦ୍ଧିଜୀବୀ, ଛାତ୍ର ଓ ଯୁବକମାନଙ୍କୁ ଅନୁପ୍ରାଣିତ କଲା । ସେ ଗଞ୍ଜାମ ଜିଲ୍ଲାରେ କମ୍ୟୁନିଷ୍ଟ ପାର୍ଟି ଗଠନର ଆଦ୍ୟଶକ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଛାତ୍ର, ଯୁବକ, ଶ୍ରମିକ ଓ କୃଷକମାନଙ୍କୁ କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ କଲେ । ୧୯୪୩ ବେଳକୁ ଜିଲ୍ଲାରେ କମ୍ୟୁନିଷ୍ଟ ପାର୍ଟିର ଭିତ୍ତି ପ୍ରସ୍ତର ପକାଇଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ଭାରତୀୟ ଜନସାଧାରଣଙ୍କୁ ଦୁର୍ଭିକ୍ଷ ମୁହଁକୁ ଠେଲି ଦେଲା—ହଜାର ହଜାର ଲୋକ ଖାଇବାକୁ ନପାଇ କଇଁନାଡ଼, ଚାକୁଣ୍ଡା ପତ୍ର, ଗେଣ୍ଡା—କୁଚିଆ ଖାଇ ରାସ୍ତା କଡ଼ରେ ଟଳି ପଡ଼ୁଥାନ୍ତି । ହଜାର ହଜାର ବୁଣାଳୀ କାମ ଧଂଦା ନପାଇ ନିଜ ଧଂଦା ଛାଡି କିଏ କେଉଁଆଡ଼େ ପେଟ ବିକଳରେ ଚାଲି ଯାଆନ୍ତି ତା'ର ଇୟତ୍ତା ନଥାଏ । ବ୍ରିଟିଶ ଆଶ୍ରିତ ରଜା-ଜମିଦାରମାନଙ୍କ ଶୋଷଣ, ଜୁଲୁମ, ଅତ୍ୟାଚାର କହିଲେ ନ ସରେ ।

Digitized by srujanika@gmail.com

ଏପରି ଅବସ୍ଥାରେ ୧୯୪୩ ଅକ୍ଟୋବର ମାସରେ କମ୍ରେଡ୍ ଭଗବତୀ ଚରଣ ପାଣିଗ୍ରାହୀ ଶେରଗଡ ଆସି ପ୍ରଥମ କରି ଗଞ୍ଜାମ ଜିଲ୍ଲାରେ ପତାକା ଉତ୍ତୋଳନ କଲେ । ତାଙ୍କର ସହଯୋଦ୍ଧା ହେଲେ କୃଷକ ନେତା ଗୋବିନ୍ଦ ପ୍ରଧାନ, ତାଙ୍କ ସହୋଦର ରାଧାକୃଷ୍ଣ ପ୍ରଧାନ, ସୂର୍ଯ୍ୟନାରାୟଣ ଆଗୁରି ପ୍ରମୁଖ ନେତୃବର୍ଗ । ସେତେବେଳେ ଜାତୀୟ ନେତାମାନେ—କି କଂଗ୍ରେସ, କି କମ୍ୟୁନିଷ୍ଟ, କି ସୋସାଲିଷ୍ଟ-ସମସ୍ତେ ଜେଲଖାନାରେ ବନ୍ଦୀ । ଗୋବିନ୍ଦ ପ୍ରଧାନ ପ୍ରମୁଖ କେତେ ଜଣ ବାହାରେ ଥାନ୍ତି ।

ଦେଶର ଏପରି ଦୁର୍ଦ୍ଦିନରେ ଲୋକଙ୍କୁ ବଞ୍ଚାଇବା ଓ ଦେଶର ସ୍ୱାଧୀନତା ହାସଲ କରିବା ଲାଗି ଗଞ୍ଜାମ ଜିଲ୍ଲାରେ କମ୍ୟୁନିଷ୍ଟ ପାର୍ଟିର ମୂଳଦୁଆ ପଡିଲା । ଯେଉଁ କେତେ ଜଣ ଆଗୁଆ, ସାହାସୀ, ତ୍ୟାଗବୀର ଦେଶ ମାତୃକାର ମୁକ୍ତିପାଇଁ ଅହୋରାତ୍ର ସଂଗ୍ରାମ କ୍ଷେତ୍ରକୁ ଲମ୍ଫ ଦେଲେ ସେମାନଙ୍କୁ ଆଦର୍ଶଗତ ଭାବେ ତାଲିମ ଦେବା ଲାଗି ଭଞ୍ଜନଗର ନିକଟସ୍ଥ ଲାଲସିଙ୍ଗି ଗ୍ରାମରେ ପ୍ରଥମ ପାର୍ଟି ଶିକ୍ଷା ଶିବିର ଅନୁଷ୍ଠିତ ହେଲା । ତାହାର ପ୍ରଧାନ ଅଧ୍ୟକ୍ଷ ହେଲେ ପୂଜ୍ୟ କମ୍ରେଡ୍ ଗୁରୁଚରଣ ପଟ୍ଟନାୟକ । ତାଙ୍କର ଶିକ୍ଷା, ଗଣ ସଂଗଠନ ଶୈଳୀ, ପାର୍ଟି ସେଲ୍ ଗଠନ ଆଦି ଶିକ୍ଷାରେ ଦୀକ୍ଷିତ ହୋଇ ଗଞ୍ଜାମ ଜିଲ୍ଲାରେ ବିଧିବଦ୍ଧ କମ୍ୟୁନିଷ୍ଟ ପାର୍ଟି ଗଠନ ହେଲା ।

ସାଥୀ ବିଜୟ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ବ୍ରହ୍ମପୁରରେ ୧୯୪୫ ସାଲରେ ପ୍ରଥମ ଥର କରି ଗଞ୍ଜାମ ଜିଲ୍ଲା ଛାତ୍ର ସଂଘ ସଂଗଠିତ ହେଲା । ଜେଲରୁ ସଦ୍ୟମୁକ୍ତ ବିଶ୍ୱନାଥ ଦାସ ଓ ଡ଼ାଃ ହରେକୃଷ୍ଣ ମହତାବ ଏଥିରେ ଉଦ୍‌ବୋଧନ ଦେଇଥିଲେ । ୧୯୪୭ ରେ ବ୍ରହ୍ମପୁର ସହରରେ ରାଜ୍ୟ ଛାତ୍ର ସଂଘର ଐତିହାସିକ ସମ୍ମିଳନୀ ଅନୁଷ୍ଠିତ ହେଲା । ରଜାକ୍ ମିଲ୍ ଶ୍ରମିକ ସଂଗଠନ, ଗୃଉଳ କଳ ଶ୍ରମିକ ସଂଘ, ରାଜମିସ୍ତ୍ରୀ ସଂଘ, ଶଗଡ଼ିଆ ସଂଘ ପ୍ରଭୃତି ଶ୍ରମିକ ଆନ୍ଦୋଳନ, ଛାତ୍ର, କୃଷକ ଆନ୍ଦୋଳନ ଆଦି ସାଥୀ ବିଜୟ ଚନ୍ଦ୍ର ଦାସଙ୍କ ସଠିକ ନେତୃତ୍ୱର ପରିଚୟ ଦିଏ ।

୧୯୪୮ କମ୍ରେଡ୍ ବି: ଟି: ରଣଦିବେଙ୍କ ନେତୃତ୍ୱରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଯେଉଁ ବାମପନ୍ଥୀ ବିଚ୍ୟୁତି ହେଲା ସେଥିରେ ଅଧିକାଂଶ ନେତୃବୃନ୍ଦ ୧୯୫୨ ଯାଏଁ କଂଗ୍ରେସୀ କାରାଗାରରେ ବନ୍ଦୀ ହେଲେ ।

୧୯୫୨ ରେ ସାବାଳକ ଭୋଟରେ ଭାରତର ପ୍ରଥମ ସାଧାରଣ ନିର୍ବାଚନ ଅନୁଷ୍ଠିତ ହେଲା । ତା'ର ଅବ୍ୟବହିତ ପୂର୍ବରୁ ସମସ୍ତ ନେତା ବନ୍ଦୀମୁକ୍ତ ହେଲେ । ସାଥୀ ବିଜୟ ଚନ୍ଦ୍ର ଦାସ ଓ ସାଥୀ ସଦାନନ୍ଦ ମହାନ୍ତି ବହୁ ଆଗରୁ ପ୍ରେସ୍ ଷ୍ଟେଟମେଣ୍ଟ ଦେଇ ଖଲାସ ହୋଇ ସାରିଥିଲେ । ପ୍ରଥମ ସାଧାରଣ ନିର୍ବାଚନରେ ଜିଲ୍ଲାରୁ ୪ ଜଣ କମ୍ୟୁନିଷ୍ଟ ସାଥୀ—ଗୋବିନ୍ଦ ପ୍ରଧାନ, ହରିହର ଦାଶ, ମୋହନ ନାଇକ ଓ ଜଗନ୍ନାଥ ମିଶ୍ର ବିଧାନ ସଭାକୁ ଓ ବିଜୟ ଚନ୍ଦ୍ର ଦାସ ଲୋକସଭାକୁ ନିର୍ବାଚିତ ହେଲେ । କମ୍ୟୁନିଷ୍ଟ ପାର୍ଟି ସହ ବୁଝାମଣା କରି ଆସିକା ଲୋକସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ବିଶ୍ୱନାଥ ଦାସଙ୍କୁ ପରାସ୍ତ କରି ସ୍ୱାଧୀନ ପ୍ରାର୍ଥୀ ଉମା ଚରଣ ପଟ୍ଟନାୟକ ନିର୍ବାଚିତ ହେଲେ । ଏହି ବୁଝାମଣାରେ ଛଜାଠି ନିର୍ବାଚନ ମଣ୍ଡଳୀରୁ ମାର୍କସ୍‌ବାଦୀ ଫରୱାର୍ଡ ବ୍ଲକ ନେତା ଦିବାକର ପଟ୍ଟନାୟକ, ବ୍ରହ୍ମପୁର ଦ୍ୱୈତ ନିର୍ବାଚନ ମଣ୍ଡଳୀରୁ ସ୍ୱାଧୀନ ପ୍ରାର୍ଥୀ ରାମଚନ୍ଦ୍ର ମିଶ୍ର ଓ ଦଣ୍ଡପାଣି ଦାସ ପ୍ରମୁଖ ଜୟଯୁକ୍ତ ହେଲେ । ଗଞ୍ଜାମ ଜିଲ୍ଲା ରାଜନୀତି ଏକ ବାମପନ୍ଥୀ ମୋଡ ନେଲା କହିଲେ ଯଥାର୍ଥ ହେବ ।

ଲୋକସଭା ସଭ୍ୟ ହେବା ପରେ ୧୯୫୬ ବେଳକୁ ସାଥୀ ବିଜୟ ଚନ୍ଦ୍ର ଦାସ ପାର୍ଟିର ପ୍ରଚଳିତ ରାଜନୀତି ସହ ଏକମତ ନହୋଇ ପାର୍ଟିରୁ ଇସ୍ତଫା ଦେଲେ ଏବଂ ୧୯୫୭ ନିର୍ବାଚନ ପରେ ବିଧିବଦ୍ଧଭାବେ କଂଗ୍ରେସରେ ଯୋଗଦେଲେ । କିନ୍ତୁ କଂଗ୍ରେସର ଦଳାଚକଟା, ଗୋଷ୍ଠୀବାଦୀ, ଲୋକବିରୋଧୀ କାର୍ଯ୍ୟ, ଦୁର୍ନୀତି ଦେଖି ସେ ବିଶେଷ ବିଚଳିତ ହୋଇ ପଡ଼ିଥିଲେ ଏବଂ ପରେ ପରେ ସେ କଂଗ୍ରେସ ରାଜନୀତିରୁ ଅଲଗା ରହିଲେ । କମ୍ୟୁନିଷ୍ଟ ପାର୍ଟି ପୂର୍ବ ବିଚ୍ୟୁତିକୁ ସଂଶୋଧନ କରି ସେତେବେଳେ ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଲାଗି ଯେଉଁ ଆହ୍ୱାନ ଦେଲା ସେଥିରେ ସେ ଉଦ୍‌ବୁଦ୍ଧ ହେଲେ ଏବଂ ଆକୃଷ୍ଟ ହେଲେ । ଅବଶ୍ୟ ତାଙ୍କ ପାଇଁ ଆଉ କାଳ ସୁଯୋଗ ଦେଇନଥିଲା । ସେ ଦୁରାରୋଗ କର୍କଟରେ ଆକ୍ରାନ୍ତ ହୋଇ କଲିକତା ମେଡିକାଲରେ ଶେଷ ନିଶ୍ୱାସ ତ୍ୟାଗ କଲେ । ଗଞ୍ଜାମ ଆକାଶରୁ ଏକ ଉଜ୍ଜ୍ୱଳ ତାରକା ଖସି ପଡ଼ିଲା । ଆରମ୍ଭରୁ ଶେଷ ନିଶ୍ୱାସ ତ୍ୟାଗ ଯାଏଁ—କମ୍ୟୁନିଷ୍ଟ ପାର୍ଟି ଗଠନ ଠାରୁ ପାର୍ଟିର କ୍ରମବିକାଶ ଯାଏଁ ସାଥୀ ବିଜୟ ଚନ୍ଦ୍ର ଦାସଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । କଟକ ମେଡିକାଲ ଠାରୁ କଲିକତା ମେଡ଼ିକାଲ ଯାଏଁ, ଏପରିକି ତାଙ୍କର ମରଶରୀରକୁ ଯୁଇକାଠ ପର୍ଯ୍ୟନ୍ତ ନେବା ଯାଏଁ କମ୍ୟୁନିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ କର୍ମୀମାନେ ହିଁ ତାଙ୍କର ସହଯୋଗୀ ଓ ସାଥୀ ରହିଥିଲେ ।

Digitized by srujanika@gmail.com



# ସାଥୀ ହରିହର ଦାଶ

ସ୍ୱାଧୀନତା ସଂଗ୍ରାମ କାଳରେ ଏକାଧିକବାର କାରାଦଣ୍ଡିତ, କଂଗ୍ରେସରୁ କମ୍ୟୁନିଷ୍ଟ ଆଦର୍ଶରେ ଦୀକ୍ଷିତ ପୁନଶ୍ଚ କାରାଦଣ୍ଡିତ, ୮୨ ବର୍ଷ ଜୀବନକାଳ ମଧ୍ୟରୁ ୬୦ ବର୍ଷକାଳ ବହୁ ସଂଗ୍ରାମରେ ପ୍ରଥମ ଧାଡ଼ିର ଅନ୍ୟ ଏକ ଶୀର୍ଷ ନେତା ରୂପେ ଜନମାନସରେ ଆସ୍ଥାନ ପାତିଥିଲେ ସାଥୀ ହରିହର ଦାଶ । ଯେଉଁ ଆସ୍କା କାଳଖଣ୍ଡୀପୁର ଗାଁରେ କୁଆଁ କୁଆଁ ହୋଇଥିଲେ, ସେଇଠି ୧୯୯୪ ମଇ ୨ ତାରିଖରେ ଆଖି ବୁଜିଲେ, ୮୨ ବର୍ଷ ବୟସରେ ।

ଦିନେ ସେ ଦେଶପ୍ରେମୀ ହେବେ, ସ୍ୱାଧୀନତା ସଂଗ୍ରାମ କାଳରେ କଂଗ୍ରେସ କର୍ମୀ ହେବେ, ପୁଣି କମ୍ୟୁନିଷ୍ଟ ହେବେ ତାହା ତାଙ୍କୁ ଆଚମ୍ବିତ କରେ । କହନ୍ତି ମୋର ଦୁର୍ଦ୍ଧର୍ଷ, ସାହାସୀପଣିଆ ଯୁବକ ବେଳେ ଦେନ ଯାଇଥିଲେ ରେଙ୍ଗୁନ । ବ୍ରିଟିଶ ଶାସିତ ବର୍ମାରେ ଗଞ୍ଜାମ ଓ ଆଖପାଖ ପୁରୀ ଜିଲ୍ଲାର ହଜାର ହଜାର ଭୂମିହୀନ, ନିରନ୍ନ, ଜମିଦାର ମହାଜନ ଶୋଷିତ କୃଷୀ ରେଙ୍ଗୁନ, ମାଣ୍ଡାଲେରେ ମୂଲଆଗିର କରୁଥିଲେ । ସେମାନଙ୍କ ଉପରେ ସେଠାରେ ଅତ୍ୟାଚାରର ପ୍ରତ୍ୟକ୍ଷଦର୍ଶୀ ହୋଇ ତାଙ୍କର ପ୍ରଥମ ଭାବାନ୍ତର ହୋଇଥିଲା । ଜେଲ ଖାସ ସମୟରେ ଯୌବନ କାଳରେ ଏକମାତ୍ର ସନ୍ତାନ ଗୃହ ପତ୍ନୀ ବିୟୋଗ । ସେ ହେଲେ କଂଗ୍ରେସ ନେତା, ଉମାଚରଣ ପଟ୍ଟନାୟକଙ୍କ ପଟ୍ଟଶିଷ୍ୟ । କଂଗ୍ରେସ ସଂଗଠନ ଓ ସ୍ୱାଧୀନତା ସଂଗ୍ରାମର କର୍ମୀ ହୋଇ ସେ ଜିଲ୍ଲା କଂଗ୍ରେସର ସମ୍ପାଦକ ହେଲେ ।

୧୯୪୦ ବ୍ୟକ୍ତିଗତ ସତ୍ୟାଗ୍ରହରେ ତୃତୀୟ ଶ୍ରେଣୀ ରାଜବନ୍ଦୀ ଥିଲେ । ଆଉ ବଡ ବଡ଼ ନେତା, ପୂର୍ବତନ ମନ୍ତ୍ରୀ, ଏମ୍.ଏଲ୍.ଏ ଏମିତିକ ତାଙ୍କ ଜୀବନର ପରବର୍ତ୍ତୀ କାଳରେ ତାଙ୍କ ନେତା ଗୋବିନ୍ଦ ପ୍ରଧାନ କିଏ ଦ୍ୱିତୀୟ ବା କିଏ ପ୍ରଥମ ଶ୍ରେଣୀ ବନ୍ଦୀ ।

୧୯୪୨ ଅଗଷ୍ଟ ଆନ୍ଦୋଳନରେ ବ୍ରହ୍ମପୁରରେ ତିନିଶତାଧିକ ଅନ୍ତରୀଣ ବନ୍ଦୀଙ୍କ ମଧ୍ୟରେ ସେ ସବୁ ମତବାଦର ରାଜବନ୍ଦୀଙ୍କ ସହିତ ମିଶିଲେ । ଯଥା କଂଗ୍ରେସ ପନ୍ଥୀ, ଗାନ୍ଧୀବାଦୀ, ସୋସାଲିଷ୍ଟ, ଫରୱାର୍ଡ ବ୍ଲକ୍, ଆଉ କମ୍ୟୁନିଷ୍ଟ । ମନ ମାନିଗଲା କମ୍ୟୁନିଷ୍ଟଙ୍କ ପାଇଁ । ସେଇଠି ମାର୍କସ୍‌ବାଦର ଶିକ୍ଷା ଆଲୋଚନା ବେଶ ସଂଖ୍ୟାରେ ବନ୍ଦୀ ଯୁବକ କମ୍ୟୁନିଷ୍ଟ ମତ ଗ୍ରହଣ କରିନେଲେ ।

ତାଙ୍କ ମୁକ୍ତି ଦିନର ସମ୍ବାଦ ପାଇ ତାଙ୍କୁ ସଂଖୋଳି ନେବାକୁ ଜେଲ ଫାଟକରେ କଟକରୁ ଗୁରୁଚରଣ ପଟ୍ଟନାୟକଙ୍କ ସମ୍ବର୍ଦ୍ଧନା ତାଙ୍କୁ ବିମୋହିତ କଲା ।

Digitized by srujanika@gmail.com

ଡେଇଁ ପଡ଼ିଲେ ନୂତନ ଧରଣର ରାଜନୈତିକ ଜୀବନ ପାଇଁ ଆଉ କଂଗ୍ରେସ ଦୁଆର ମାଡ଼ିଲେନି । କଂଗ୍ରେସ ସମ୍ପାଦକ ପଦର ମୋହ ତୁଟିଲା । ଗୋବିନ୍ଦ ପ୍ରଧାନ, ସାଧୁଚରଣ ମହାନ୍ତି, ଗୁରୁଚରଣ ପଟ୍ଟନାୟକ, ଅନନ୍ତ ପାତ୍ର ଏବଂ ଆଉ କେତେକ କର୍ମୀଙ୍କ ସହିତ ଝାସ ଦେଲେ ଗୋବିନ୍ଦ ପ୍ରଧାନଙ୍କ ନେତୃତ୍ୱାଧୀନ ଗଞ୍ଜାମ ରଇତ ସଭା ଆନ୍ଦୋଳନରେ । ସେତେବେଳେ ତତ୍ତ୍ୱାବଧାନ ତାଙ୍କର ଥିଲେ ବିଜୟ ଚନ୍ଦ୍ର ଦାସ । ଯୁବ ଆନ୍ଦୋଳନ ଭିତରୁ ଆସୁଥାନ୍ତି ସଦାନନ୍ଦ ମହାନ୍ତି, ବିଶ୍ୱନାଥ ସାହୁ, ଦୁଃଖୀକୃଷ୍ଣ ପଣ୍ଡା, ହରିବନ୍ଧୁ ବେହେରା ଏମିତି କେତେକ । ଆସିକାର ତାଙ୍କ ସହ ସ୍ୱାଧୀନତା ସଂଗ୍ରାମର ରାଜବନ୍ଦୀ ଜନାର୍ଦ୍ଦନ ସିଂହ, ଶ୍ୟାମସୁନ୍ଦର ପାତ୍ର । ତେଣେ ଶେରଗଡ଼ର ସୂର୍ଯ୍ୟନାରାୟଣ ଆଚାରୀ, ରାଧାକୃଷ୍ଣ ପ୍ରଧାନ, ଏମ୍. ଜଗନ୍ନାଥ ସ୍ୱାମୀ ଏମିତି ଅନେକ ।

୧୯୦୫ରୁ ୧୯୫୨ । ଗଞ୍ଜାମରେ ରଇତ ଆନ୍ଦୋଳନ ଓ କମ୍ୟୁନିଷ୍ଟ ସଂଗଠନ ଓ ତା'ର ପ୍ରସାର-ପ୍ରଭାବ । ଆଉ ଅନେକ ଅବଦାନ ରହିଛି । ହେତାଖେଷ୍ଟା ଜମି, ଯାହାର ଶହ ଶହ ବର୍ଷର ଦଖଲ ଭୋଗ କରୁଥିଲେ ରଇତମାନେ । ସେମାନଙ୍କୁ ଉକ୍ତ ଜମିରୁ ବେଦଖଲ କରୁଛନ୍ତି ଜମିଦାରମାନେ । ଜମିଦାରଙ୍କ ଅଧୀନରେ ଥିବା ସେମାନଙ୍କର ଶୋଷଣର ହତିଆର ମୁସ୍ତାଦାରମାନେ ରଇତଙ୍କୁ କାଙ୍ଗାଳ କରୁଛନ୍ତି । ରଇତ ସଭା ଗାଁ ଗାଁରେ ଗଠନ, କର୍ମୀ ଓ ଯୋଦ୍ଧା ତିଆରି, ରଇତ ସଭା ସଭ୍ୟ ସଂଗ୍ରହ, କୃଷାଣୀ ସଭା ଗଠନ, ଇନାମଦାରୀ ପ୍ରଥାର ଇନାମ କୃଷିମାନଙ୍କର ସଂଗଠନ ଓ ଆନ୍ଦୋଳନର ନେତା ହୋଇଗଲେ ଗୋବିନ୍ଦ ପ୍ରଧାନଙ୍କ ପରେ ସାଥୀ ହରିହର ଦାଶ । ପୁଣି କମ୍ୟୁନିଷ୍ଟ ପାର୍ଟିର ଶାଖା ଗଠନ, ସଭ୍ୟ ସଂଗ୍ରହ କାମ ତାଙ୍କୁ ଫୁରୁସତ୍ ମିଳେନା ।

ସେତେବେଳେ ଗଞ୍ଜାମରେ କଳ୍ପନାତୀତ ବିଶାଳ ବିଶାଳ ରଇତ ସମାବେଶ ହୁଏ । ୧୯୪୪ରେ ତାଙ୍କ ଗାଁ ଆସିକାରେ ୨୦ ହଜାର ରଇତଙ୍କ ସମାବେଶ, ୧୯୪୭ରେ ଡାକରଡ଼ାରେ ୧୫ ହଜାରରୁ ଊର୍ଦ୍ଧ୍ୱ ସମାବେଶ, ବ୍ରହ୍ମପୁରରେ ୧୯୪୮ରେ ୧୦ ହଜାର କୃଷିଙ୍କ ସମାବେଶ ପୂର୍ବରୁ ୧୯୪୭ରେ ଗଞ୍ଜାମରୁ ଶହ ଶହ କୃଷିଙ୍କ ପାଦରେ କଟକରେ ଥିବା ବିଧାନସଭାକୁ ଅଭିଯାନର ନେତୃତ୍ୱଦାନରେ ତାଂକର ଭୂମିକା ତାଂକୁ ସେ କାଳରେ ବିଶେଷ ଜନପ୍ରିୟତା ଆଣିଦେଲା ।

୧୯୪୮ ମଇ ୨୪ ଡାକରଡ଼ା ଗୁଳିକାଣ୍ଡ, ମୁସ୍ତାଦାରୀ, ଜମିଦାରୀଙ୍କ ସପକ୍ଷରେ ସ୍ୱାଧୀନତା ପର ପ୍ରଧାନମନ୍ତ୍ରୀ ଶ୍ରୀ ମହତାବଙ୍କ ନିର୍ଦ୍ଦେଶରେ ୭ ଜଣ ନିହତ ଆଉ ୭୦ ଜଣ ଗୁରୁତର ଆହାତ ।

ପରେ ଏହି ମୁସ୍ତାଦାରୀ ପ୍ରଥା ବିଲୋପ, ଇନାମଦାରୀ ପ୍ରଥା ବିଲୋପ ପରେ ସାଧିତ ହେଲା । ଐତିହାସିକ ଆନ୍ଦୋଳନ, ଆତ୍ମବଳିଦାନ ଓ ସଂକଳ୍ପର ବିଜୟ ହେଲା ।

୧୯୫୨ରେ କମ୍ୟୁନିଷ୍ଟମାନଙ୍କ ଉପରେ ସ୍ୱାଧୀନତାତ୍ତର କଂଗ୍ରେସ ସରକାରର ଆକ୍ରମଣ । ବ୍ରହ୍ମପୁର ଜେଲ, କଟକ ଜେଲ, ପୁରୀ ଜେଲରେ ବର୍ଷ ବର୍ଷ କାଳ ଶହ ଶହ କମ୍ୟୁନିଷ୍ଟ ରାଜବନ୍ଦୀ । ଗଞ୍ଜାମର ଶୀର୍ଷ ନେତାମାନେ ବନ୍ଦୀ । ଗୋବିନ୍ଦ ପ୍ରଧାନ, ହରିହର ଦାଶ, ଗଞ୍ଜାମର ଆଉ ସବୁ କମ୍ୟୁନିଷ୍ଟ ନେତା । ରଇତ ନେତା, ଯୁବ ଗୁପ୍ତ ଆତ୍ମଗୋପନରେ ।

ଆସିକା ସହରରେ ସେ ଧରାପଡ଼ିଲେ ପୋଲିସ ଫେରରେ । ଅଦ୍ଭୁତ ଉଲଗ୍ନ ହୋଇ ସେ ଖସିପିଟି ପୋଲିସ ହାତରୁ ଖସିଗଲେ ଶହ ଶହ ଦେଖଣାହାରୀଙ୍କ ମଧ୍ୟରେ । ଅବଶ୍ୟ ପରେ ପୁଣି ବନ୍ଦୀ ଆନ୍ୟମାନଙ୍କ ସଙ୍ଗରେ ।

ଗଞ୍ଜାମ ଲାଲ ହୋଇଗଲା ବୋଲି କଂଗ୍ରେସର ଭାଳେଣି, ୧୯୫୨ ନିର୍ବାଚନ । ୧୧ଟି ଆସନରୁ ୪ ଜଣ ହରିହର, ଜଗନ୍ନାଥ, ଗୋବିନ୍ଦ, ମୋହନଙ୍କ ସମେତ ବିଧାନସଭାକୁ ଓ ବିଜୟ ଚନ୍ଦ୍ର ଦାସ ଲୋକସଭାକୁ ନିର୍ବାଚିତ । ତାଙ୍କର ଲୋକପ୍ରିୟତା ଓ ଜନ-ସଂଯୋଗ ଓ ଜନସେବାର ସ୍ୱୀକୃତି ସ୍ୱରୂପ ସେ ଚାରିଥର ବିଧାନସଭାକୁ ନିର୍ବାଚିତ । ପଞ୍ଚାୟତ ଶାସନ ଆରମ୍ଭ କାଳରେ ଦୁଇଥର ସେ କାଳିକୋଟପୁର ସରପଞ୍ଚ ହୋଇ ଏପରି ସଫଳତା ପ୍ରଦର୍ଶନ କଲେ ଯେ, ତାଙ୍କ ପଞ୍ଚାୟତ ପ୍ରଥମର ମର୍ଯ୍ୟାଦା ଲାଭ କରିଥିଲା ।

ବିଧାନସଭା ଅଧିବେଶନରେ ହରିହର ଦାଶ ଉପସ୍ଥିତ ନଥିଲେ ଜମେ ନାହିଁ । ତାଙ୍କର ଆଲୋଚନା, କୌତୁକ, ଲଘୁ ଅଥଚ ତୀକ୍ଷ୍ଣ ରାଜନୈତିକ ପରିହାସ, ହାସ୍ୟରସ ଶୁଣିବାକୁ ସରକାରୀ ଓ ବିରୋଧୀ ସଦସ୍ୟ, ସାମ୍ବାଦିକ ଓ ଦର୍ଶକ ଉତ୍କଣ୍ଠିତ । ଅସୀମ ସାହାସ ତାଙ୍କର । ୧୯୫୫ ଋଷିକୁଲ୍ୟାର ଘାଇ ବନ୍ୟା ବେଳେ ବନ୍ୟା ଆବର୍ତ୍ତରେ ପଡ଼ିଥିବା ଜନତାଙ୍କୁ ଉଦ୍ଧାର କରିବା ଲାଗି ସରକାରୀ ଲୋକେ ଜଳ ପ୍ରଭାବ ଦେଖି ଡରି ରହିବା ବେଳେ ସେ ପାଣିକୁ ଡେଇଁପଡି ନୌକାବାହି ଆଉ ଜନତାଙ୍କ ପାଖରେ ପହଞ୍ଚିବା ସମସ୍ତଙ୍କୁ ଆଚମ୍ଭିତ କରିଥିଲା ।

Digitized by srujanika@gmail.com

ନୀଳଗିରିର ରାଜା ସାନ୍ଦିଆ ସିଂହ କଳାପତାକା ବାହିନୀକୁ ଧରି ଘର ପୋଡ଼ୁଥାଏ, ଲୋକଙ୍କୁ ମାରୁଥାଏ। ନୀଳଗିରି ପ୍ରଜା ଆନ୍ଦୋଳନର ନେତା ବନମାଳୀ ଦାସ ଆଉ କୈଳାସ ମହାନ୍ତି। ନୀଳଗିରିରେ କଂଗ୍ରେସ ସରକାର ପଶିପାରୁ ନାହିଁ, ମାଉଣ୍ଟ-ବେଟେନ ଚୁକ୍ତିକୁ ମାନି। କମ୍ୟୁନିଷ୍ଟମାନେ ପଶିବେ ଅସ୍ତ୍ରଧରି ନଚେତ୍ ବାଟ ନାହିଁ। ମେଣ୍ଢାଶାଳରେ ଅସ୍ତ୍ରଶସ୍ତ୍ର ବ୍ୟବହାର ତାଲିମ। ହରିହର ଦାଶ ଅନ୍ୟମାନଙ୍କ ସାଙ୍ଗରେ ତାଲିମ ନିଅନ୍ତି। ସମୃଦ ଅବ୍‌ଦୁଲ କାଦର, ନନ୍ଦ କିଶୋର ପଟ୍ଟନାୟକ, ଗୋପିନାଥ ବ୍ରହ୍ମଗୁରୁ, ବୈଷ୍ଣବ ପଟ୍ଟନାୟକ ପ୍ରମୁଖଙ୍କ ସଙ୍ଗରେ ହରିହର।

ସଶସ୍ତ୍ର ଲଢ଼େଇ ସାନ୍ଦିଆ ସିଂହ ଉତ୍ପାତକାରୀ ବାହିନୀ ସହିତ। କଂଗ୍ରେସ ସରକାର ପାଇଁ ଶାନ୍ତିଶୃଙ୍ଖଳା ରକ୍ଷା ଆଳରେ ନବକୃଷ୍ଣ ଚୌଧୁରୀଙ୍କ ନିର୍ଦ୍ଦେଶରେ। ତେଣୁ ନୀଳଗିରିରେ ପ୍ରବେଶ କରିବାକୁ ବାଟ କବାଟ ଫିଟିଲା। ପରବର୍ତ୍ତୀ କାଳରେ ୬ ଶହ ଗଡ଼ଜାତ ଭାରତୀୟ ୟୁନିୟନ ସହିତ ମିଶିବା ପୂର୍ବରୁ ସର୍ବପ୍ରଥମ ନୀଳଗିରି ହିଁ ମିଶିଥିଲା।

ସାଥୀ ହରିହର ଦାଶଙ୍କ ୬୦ ବର୍ଷ କାଳର ରାଜନୈତିକ ଜୀବନରେ ସେ ନାନା ଘାତ ପ୍ରତିଘାତ ସତ୍ତ୍ୱେ କମ୍ୟୁନିଷ୍ଟ ପାର୍ଟିର ଅବିଚଳ ଯୋଦ୍ଧା ରହି, ଗଞ୍ଜାମ ପାର୍ଟିର ପ୍ରଥମ ସମ୍ପାଦକ ହୋଇ, ରାଜ୍ୟ ପାର୍ଟିର ନେତୃତ୍ୱରେ ଅଂଶୀଦାର ହୋଇ ତାଙ୍କର ଅବଦାନ ଦେଇ ଯାଇଛନ୍ତି। ଗଞ୍ଜାମର ଅନେକ ସାଥୀଙ୍କୁ ସେ ପାର୍ଟି ଭିତରକୁ ଆଣିବାରେ ସାହାଯ୍ୟ କରିଛନ୍ତି। ବହୁ ଜନ-ସଂଗ୍ରାମର ଆଗରେ ରହିଛନ୍ତି।

ମୃତ୍ୟୁ ହେବାର ଥିଲା, ହୋଇଛି। ମାତ୍ର ଓଡ଼ିଶାର ବିଶେଷତଃ ଗଞ୍ଜାମର ସ୍ୱାଧୀନତା ପୂର୍ବ ଓ ସ୍ୱାଧୀନତା ପର ଜନ-ଆନ୍ଦୋଳନରେ ସେ ତାଙ୍କର ସ୍ୱାକ୍ଷର ରଖିଯାଇଛନ୍ତି।



*With best compliments from :*

☎ : 72206

**BERHAMPUR CYCLE SUPPLY CO.**

House of all types of CYCLE, SPARE, RICKSHWA & FANS.

**Hanuman Bazar, BERHAMPUR-760002**

(Dist. Ganjam) Orissa.

---

**Berhampur Fan House**

Dealer in— **All types of FANS, AIR COOLERS & WATER PUMPS.**

**Hanuman Bazar, BERHAMPUR**

Digitized by srujanika@gmail.com

# ଛତ୍ରପୁର ସମବାୟ ବ୍ୟାଙ୍କ ଲିଃ

**ଛତ୍ରପୁର [ଗଂଜାମ]**

ଓଡ଼ିଶାର ତଥା ଭାରତ ବର୍ଷର ପୁରାତନ ସମବାୟ ବ୍ୟାଙ୍କ ହିସାବରେ ଏହି ବ୍ୟାଙ୍କ ଛତ୍ରପୁର ସହର ଏବଂ ୩୪ ଖଣ୍ଡ ପଲ୍ଲୀ ଗ୍ରାମବାସୀମାନଙ୍କର ସେବା କରିଆସିଛି । ଭାରତୀୟ ରିଜର୍ଭ ବ୍ୟାଙ୍କର ଲାଇସେନ୍ସ ପ୍ରାପ୍ତ ।

- **ସମସ୍ତ ଅମାନତ ବୀମାଭୁକ୍ତ ଓ ଗ୍ୟାରେଣ୍ଟି ଯୁକ୍ତ ।**
- **ଏହି ବ୍ୟାଙ୍କରେ ସ୍ୱର୍ଣ୍ଣ ବନ୍ଧକୀ ଋଣର ବ୍ୟବସ୍ଥା ଅଛି ।**
- **ନଗଦ ଓ ଉଧାର ଋଣ ଦିଆଯାଏ ।**

ସମସ୍ତ ପ୍ରକାର ଜମା ଉପରେ ସୁଧ ଶତକଡ଼ା ½% ଅଧିକା ଦିଆଯାଏ ।
ଆପଣଙ୍କର ବଳକା ଅର୍ଥର ବିନିଯୋଗ ସଦ୍ ବିନିଯୋଗ ହେବ ନିଶ୍ଚୟ ।

**ଆଇ. ସୂର୍ଯ୍ୟନାରାୟଣ ରାଓ**
ସମ୍ପାଦକ

**ଦୁର୍ଯ୍ୟୋଧନ ସାହୁ**
ସଭାପତି



# The Berhampore Cooperative Central Bank Ltd.

**BERHAMPUR (Ganjam)**

Financial Position as on 31-3-95 Branches 19 nos.

| | (Rs. in Lakhs) |
|---|---|
| Share Capital | 193-69 |
| Reserve & other funds ... | 283-83 |
| Deposits | 2240-17 |
| Borrowings | 542-46 |
| Loans & advances | 1452-45 |
| Working Capital | 3155-00 |

SALIENT FEATURES :

1. Quick, Prompt & Personalised Service.
2. Higher interest offered on Deposit as compared to Nationalised Banks.
3. Attractive Deposit Sehemes to suit your requirments.
4. Deposits fully insured under Deposit Insurance Schemes.
5. All Types of loan facilities to the needy.
6. Consumer's satisfaction is our motto.
7. We undertake all types of Bank business.
8. Safe deposit lockers are available.

Sri Trigunateeta Deb
*President*

Sri K. Surya Rao
*Secretary*

# କମ୍ରେଡ୍ ଲକ୍ଷ୍ମଣ ମହାପାତ୍ର



ଦରିଦ୍ର ପରିବାରରେ ଜନ୍ମ କମ୍ରେଡ୍ ଲକ୍ଷ୍ମଣ ମହାପାତ୍ର ଶୈଶବରୁ ଦାରିଦ୍ର୍ୟ ଓ ଦରିଦ୍ର ଲୋକଙ୍କ ପ୍ରତି ସନ୍ତାନମାନଙ୍କ ତାଚ୍ଛଲ୍ୟ, ଉପହାସ ଓ ଅପମାନ ବିରୁଦ୍ଧରେ ମନେ ମନେ ବିଦ୍ରୋହୀ ହୋଇଥିଲେ । ଜଣେ ମିସ୍ତ୍ରୀର ସନ୍ତାନ ଲକ୍ଷ୍ମଣ ମହାପାତ୍ରଙ୍କ ୧୧-୬-୧୯୨୩ ସାଲରେ ନନ୍ଦିକ ଗ୍ରାମରେ ଜନ୍ମ । ତାଙ୍କ ପିତା ବ୍ରଜବାସୀ ମହାପାତ୍ର ଓ ମାତା ହେଉଛନ୍ତି ନେହମଣି ମହାପାତ୍ର । ବାପାଙ୍କ କଷ୍ଟାର୍ଜିତ ଆୟରେ ଅଧ୍ୟୟନ ଆରମ୍ଭ କରି ଜଣେ ମେଧାବୀ ଛାତ୍ର ରୂପେ ଭବିଷ୍ୟତ ଜୀବନର ସ୍ୱପ୍ନ ଦେଖୁଥିଲେ । ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ବି. ଏସ୍.ସି. (ଅନର୍ସ) ଫାଷ୍ଟକ୍ଲାସ୍ ଫାଷ୍ଟ ହୋଇ ଉତ୍ତୀର୍ଣ୍ଣ ହେବାପରେ ୧୯୪୩-୪୪ରେ ପୁଲିସ ଚାକିରିରେ ଜଣେ କର୍ମନିଷ୍ଠ, କର୍ତ୍ତବ୍ୟ ପରାୟଣ, ସଚ୍ଚୋଟ ଏସ୍. ଆଇ. ରୂପେ କାର୍ଯ୍ୟ କରିଥିଲେ ।

ଏହି ଚାକିରିକାଳ ଭିତରେ ସେ ଘରୋଇ ଭାବରେ ଆଇନ ଅଧ୍ୟୟନ କରି ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ୧୯୫୨-୫୩ ରେ ଆଇନ ବ୍ୟବସାୟକୁ ବାଛିବାର ସମ୍ବଳ କରି ମୁଖ୍ୟତଃ ଗଞ୍ଜାମ ଜିଲ୍ଲାର ଚାଷୀ ଆନ୍ଦୋଳନରେ ଝାସ ଦେଲେ ଏବଂ ବଡ ବଡ ଜମି ମାଲିକଙ୍କ ଅଧୀନରେ ଥିବା ଭାଗ ଚାଷୀମାନଂକ ସ୍ୱାର୍ଥରକ୍ଷା ଲାଗି କମ୍ୟୁନିଷ୍ଟ ପାର୍ଟି ଓ କୃଷକ ସଭା ନେତୃତ୍ୱରେ ଚାଲିଥିବା ସଫଳ ସଂଗ୍ରାମରେ ଅନ୍ୟତମ ନେତା ରୂପେ ବିପୁଳ ଲୋକପ୍ରିୟତା ହାସଲ କଲେ ଏବଂ ଭାଗ ଚାଷୀମାନଂକ ସତ୍ତ୍ୱ ପାଇଁ ମାମଲାମକଦ୍ଦମାଗୁଡ଼ିକୁ ବସ୍ତୁତଃ ବିନା ପାରିଶ୍ରମିକରେ ଚଳାଇ ସୁନାମ ଅର୍ଜନ କରିଥିଲେ ।

୧୯୫୭ ରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ନଥାଇ ମଧ୍ୟ ଖଟିଖିଆ ଶ୍ରେଣୀର ସ୍ୱାର୍ଥ ପ୍ରତି ଅନୁରକ୍ତ ହେତୁ କମ୍ୟୁନିଷ୍ଟ ପାର୍ଟି ଟିକଟରେ ଓଡ଼ିଶା ବିଧାନସଭାକୁ ଛତ୍ରପୁରରୁ ପ୍ରାର୍ଥୀ ହୋଇ ଅଳ୍ପ ସଂଖ୍ୟକ ଭୋଟରେ ପରାଜିତ ହୋଇଥିଲେ ।

କିନ୍ତୁ ଲଗ ଲଗ ତିନି ଥର ୧୯୬୧, ୧୯୬୭ ଓ ୧୯୭୧ ରେ ଏହି ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ପ୍ରାର୍ଥୀ ରୂପେ ନିର୍ବାଚିତ ହୋଇ ଏକାଦିକ୍ରମେ ୧୧ ବର୍ଷ କାଳ ଏକ ଦକ୍ଷ ବିଧାୟକ, ଓଡ଼ିଶାର ଖଟିଖିଆ ଜନ ସାଧାରଣଙ୍କର ଏକ ଲଢ଼ୁଆ ମୁଖପାତ୍ର ହୋଇଥିଲେ ଏବଂ ଅନ୍ୟାନ୍ୟ ବିରୋଧୀଦଳ ଓ ଶାସକ ଦଳର ବିଧାୟକ ମହଲରେ ସମ୍ମାନିତ ହେଉଥିଲେ ।

୧୯୭୪ ରୁ ୧୯୮୦ ଯାଏ ୬ବର୍ଷ କାଳ ସେ ରାଜ୍ୟ ସଭାରେ ଓଡ଼ିଶାର ଜନ ସମସ୍ୟାଗୁଡ଼ିକ ପ୍ରତି କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବା କ୍ଷେତ୍ରରେ ଦକ୍ଷତା ଦର୍ଶାଇଥିଲେ ।

ବିଧାନସଭା ସଦସ୍ୟ ଥାଇ ବା ପାର୍ଲିଆମେଣ୍ଟ ସଦସ୍ୟ ଥାଇ ସାମାନ୍ୟ ଅବସର ମିଳିଲେ ଲକ୍ଷ୍ମଣ ବାବୁଙ୍କୁ ଦେଖିବାକୁ ମିଳେ ବିଭିନ୍ନ ଗାଁରେ, ସାହି ବସ୍ତିରେ, ଶ୍ରମିକ ମହଲରେ । ଗୋଟିଏ ଝୁଲା ବ୍ୟାଗ୍, ଫୁଙ୍କା ଡକଆ ଖଣ୍ଡେ, ଖଣ୍ଡେ ଲୁଙ୍ଗି ଓ

Digitized by srujanika@gmail.com

ଖଣ୍ଡେ ଚଦର ଧରି ସେ ସଭା ସମିତି କରି ଯେଉଁଠି ମୁଠାଏ ମିଳେ ଖାଇ ଯେଉଁଠି ନା ସେଇଠି ଶୋଇ ପଡ଼ନ୍ତି । ଗାଁର ଗରିବ ମୂଲିଆ ଘର, ଆଦିବାସୀ ଘର, ଶ୍ରମିକ କୁଡ଼ିଆ ଘର ବାରଣ୍ଡାରେ ସେ ବିଶ୍ରାମ ନେଇ ବାହାରି ପଡ଼ନ୍ତି ସକାଳୁ ଅନ୍ୟ ଗାଁ, ଅନ୍ୟ ସ୍ଥାନକୁ ।

ସମାଜରୁ ଦାରିଦ୍ର୍ୟ ବିଲୋପର ଏକମାତ୍ର ବିଜ୍ଞାନ ସମ୍ମତ ମତାଦର୍ଶ ମାର୍କସ୍‌ବାଦ-ଲେନିନ୍‌ବାଦର ତତ୍ତ୍ୱ ଅଧ୍ୟୟନରେ କେବଳ ତାଙ୍କ ଜୀବନ ସୀମିତ ନଥିଲା । ଦାରିଦ୍ର୍ୟ, ଶୋଷଣ, ଅତ୍ୟାଚାର ବିରୁଦ୍ଧରେ ଲୋକଙ୍କ ସଂଗ୍ରାମରେ ସେ ତତ୍ତ୍ୱକୁ କାର୍ଯ୍ୟରେ ପରିଣତ କରି ଶିକ୍ଷା ନେଉଥିଲେ ।

କୃଷି ଆନ୍ଦୋଳନର ସ୍ୱୀକୃତ ନେତା ରୂପେ ସେ ୧୦ ବର୍ଷ କାଳ ଗଞ୍ଜାମ ଜିଲ୍ଲା କୃଷକ ସଭାର ସଭାପତି ପଦରେ ଅଧିଷ୍ଠିତ ଥିଲେ ।

ଗାଁ ଗହଳର ସର୍ବହରା, କ୍ଷେତ ମୂଲିଆ, ଯେଉଁମାନେ ମୁଖ୍ୟତଃ ହରିଜନ ଓ ଆଦିବାସୀ ସେମାନଙ୍କ ସଂଗଠନ ଓ ସଂଗ୍ରାମ ଏବଂ କ୍ଷେତ ମୂଲିଆ, କୃଷି ସମ୍ପ୍ରଦାୟର ଐକ୍ୟ ନହେଲେ କୃଷି ଆନ୍ଦୋଳନ ନୂତନ ଆଲୋକ ପାଇବ ନାହିଁ ବୋଲି ପାର୍ଟିର ଉପଲବ୍‌ଧିକୁ ସେ ଗ୍ରହଣ କରିନେଇ ରାଜ୍ୟ କ୍ଷେତ ମୂଲିଆ ସଂଗଠନର ଦାୟିତ୍ୱ ନେଲେ ଓ ରାଜ୍ୟ ଶାଖା ଭାରତୀୟ କ୍ଷେତ ମଜ୍‌ଦୁର ୟୁନିୟନର ସଭାପତି ଥିଲେ ।

ଗଞ୍ଜାମର ବିଭିନ୍ନ ଶିଳ୍ପାନୁଷ୍ଠାନର ଶ୍ରମିକମାନଙ୍କ ସଂଗ୍ରାମର ନେତୃତ୍ୱ ନେଇ ସେ ଜୟଶ୍ରୀ କେମିକାଲ ଏମ୍ପ୍ଲାୟିଜ ୟୁନିୟନର **୧୫** ବର୍ଷ ଧରି ସଭାପତି ଥିଲେ । ସେ ମଧ୍ୟ ଭାରତୀୟ ବିରଳ ମୃତ୍ତିକା କର୍ମଚାରୀ ୟୁନିୟନ ଓ ଲବଣ ଶ୍ରମିକ ସଂଘର ସଭାପତି ଏବଂ ଯାହାଙ୍କ ପଟ୍ଟଆରର ନେତୃତ୍ୱ ନେବା ବେଳେ ଗୁଣ୍ଡାମାନେ ତାଙ୍କ ପ୍ରାଣ ନେଲେ ସେହି ସିଭିଲ ଡିଫେନ୍‌ସ୍ ଇଞ୍ଜିନିୟରିଂ ଓ୍ୱାର୍କରସ୍ ୟୁନିୟନର ସଭାପତି ଥିଲେ ।

ଅନେକ ଶ୍ରମିକ ୟୁନିୟନର ସଂଗଠକ ଥିବାରୁ ସେ ରାଜ୍ୟ ଶାଖା, ଏ: ଆଇ: ଟି: ୟୁ:ସି ର ଉପ ସଭାପତି ନିର୍ବାଚିତ ହୋଇଥିଲେ ।

ସେ ଭାରତ ସୋଭିଏତ୍ ସାଂସ୍କୃତିକ ସମିତି ରାଜ୍ୟ ଶାଖାର ଉପ ସଭାପତି ଥିଲେ ଏବଂ ଏକଦା ଭାରତ ଜି: ଡି: ଆର ମୈତ୍ରୀ ସଂଘର ସଭାପତି ଥିଲେ ।

ପରମାଣୁ ଯୁଦ୍ଧ ଭିଆଇଦେବା ଲାଗି ରିଗାନ୍ ସରକାର କରୁଥିବା ହୀନ ଚକ୍ରାନ୍ତ ବିରୁଦ୍ଧରେ ସେ ଥିଲେ ଓଡ଼ିଶାରେ ଜଣେ ଶାନ୍ତି ସୈନିକ ଓ ରାଜ୍ୟ ଶାଖା ଶାନ୍ତି ଓ ସଂହତି ପରିଷଦ ସହିତ ସେ ସମ୍ପୃକ୍ତ ଥିଲେ ।

ଜଣେ ବିଶିଷ୍ଟ, ବିଚକ୍ଷଣ ଆଇନଜୀବୀ ଭାବରେ ସେ ନ୍ୟାୟାଳୟରେ ଗଣତନ୍ତ୍ରର ସୁରକ୍ଷା, ସାମାଜିକ ନ୍ୟାୟ, ମାନବିକ ମୂଲ୍ୟବୋଧ ସୁରକ୍ଷାର ଜଣେ ପ୍ରବକ୍ତା ଥିଲେ ।

ସର୍ବ ଶେଷରେ ସେ ଥିଲେ ଏକ ଅନୁରକ୍ତ କମ୍ୟୁନିଷ୍ଟ ଏବଂ ଗଞ୍ଜାମ ଜିଲ୍ଲା ପାର୍ଟିର ଅନ୍ୟତମ ବରେଣ୍ୟ ନେତା ଓ ରାଜ୍ୟ ପାର୍ଟି କାର୍ଯ୍ୟକାରୀ କମିଟିର ସଦସ୍ୟ ।

ଗରିବ ପରିବାରରୁ ଜନ୍ମ, ସାଥୀ ଲକ୍ଷ୍ମଣ ମହାପାତ୍ର ଗରିବଙ୍କ ପାଇଁ ଜୀବନ ବ୍ୟାପୀ ଲଢ଼ି ଲଢ଼ି ୨୦ ଅଗଷ୍ଟ ୧୯୯୩ ରେ ବୀର ଶହୀଦର ମରଣକୁ ବରଣ କରିନେଲେ ।

ସାଥୀ ଲକ୍ଷ୍ମଣ ମହାପାତ୍ରଙ୍କ ସହଧର୍ମିଣୀ ରତ୍ନମଣି ମହାପାତ୍ର ପୁଅ ସାଥୀ ଅଜୟ ମହାପାତ୍ର ଓ ଝିଅ ଶ୍ରୀମତୀ ଅଳକା ମହାପାତ୍ର ବର୍ତ୍ତମାନ ଛତ୍ରପୁରରେ ରହୁଛନ୍ତି ।

Digitized by srujanika@gmail.com



# କମ୍ରେଡ୍ ସଦାନନ୍ଦ ମହାନ୍ତି

କମ୍ରେଡ୍ ସଦାନନ୍ଦ ମହାନ୍ତିଙ୍କର ରାଜନୈତିକ ଜୀବନର ଇତିହାସ ହେଉଛି ଏକ ସଂଗ୍ରାମମୟ ଜୀବନର ଇତିହାସ । ସେ ହିଞ୍ଜିଳି ବ୍ଲକ୍ ଅନ୍ତର୍ଗତ ଆଲପୁର ଗ୍ରାମରେ ୧୯୨୫ ଜୁନ୍ ୧୦ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟ ଶିକ୍ଷା ସେ ଗ୍ରହଣ କରିଥିଲେ ଆଲପୁର ଠାରୁ ଦୁଇ କିଲୋମିଟର ପୂର୍ବରେ ଅବସ୍ଥିତ ନନ୍ଦିକ ଗ୍ରାମର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ । ମାଧ୍ୟମିକ ଶିକ୍ଷା ଗ୍ରହଣ ପାଇଁ ସେ ପୁରୁଷୋତ୍ତମପୁର ନରସିଂହ ଦାସ ଉଚ୍ଚ ବିଦ୍ୟାଳୟରେ ପ୍ରବେଶ କରିଥିଲେ । ସେତେବେଳୁ ତାଙ୍କର ସ୍ୱାଧୀନଚେତା ମନୋଭାବ ଓ ଅନ୍ୟାୟ ଅନାଚାର ବିରୁଦ୍ଧରେ ସଂଗ୍ରାମ କରିବା ମନୋଭାବ ପରିପ୍ରକାଶ ହୋଇଥିଲା । କୌଣସି ଶିକ୍ଷକଙ୍କ ସାମାନ୍ୟତମ ବ୍ୟତିକ୍ରମ ଆଚରଣ ସହିଯିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଫଳରେ ମାଧ୍ୟମିକ ଶିକ୍ଷା ସମାପ୍ତ କରିବା ସଦାନନ୍ଦ ବାବୁ ପୁରୁଷୋତ୍ତମ ଛାଡିବା ପାଇଁ ବାଧ୍ୟ ହୋଇଥିଲେ ଏବଂ ଛତ୍ରପୁରରେ ନାମ ଲେଖାଇ ସେଠାରୁ ମାଟ୍ରିକ୍ ପାସ୍ କଲେ । ତା ପରେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ଶିକ୍ଷା ଗ୍ରହଣ କଲେ । ଖଲ୍ଲିକୋଟ କଲେଜରେ ପଢୁଥିବା ସମୟରେ ସେ ଛାତ୍ର ସଂଘରେ ସାମିଲ ହେଲେ ।

ତତ୍କାଳୀନ ଛାତ୍ର ନେତା ସତ୍ୟବାଦୀ ମିଶ୍ର ଜେଲରୁ ଖଲାସ ହେବା ପରେ ବ୍ରହ୍ମପୁର, ଆସିକା, ପୁରୁଷୋତ୍ତମପୁର ଆସି ଛାତ୍ର ସଂଘ ଗଠନ କରିବା ଦିଗରେ ଲାଗିପଡ଼ିଲେ । ରାଜ୍ୟ କେନ୍ଦ୍ରରୁ ରାମଚନ୍ଦ୍ର ରାମ, ଗଙ୍ଗାଧର ରଥ, ମନମୋହନ ମିଶ୍ର, ଦୁର୍ଗାଚରଣ ମହାନ୍ତି, ନିରୁପମା ରଥ, ଜଗତକୃଷ୍ଣ ଦାସ, ନରସିଂହ ତ୍ରିପାଠୀ ପ୍ରମୁଖ ଛାତ୍ର ନେତା ଘନିଷ୍ଠ ସମ୍ପର୍କ ରଖିଲେ । ବ୍ରହ୍ମପୁରରେ ସଦାନନ୍ଦ ମହାନ୍ତି, ରାମମୋହନ ଜେନା, କିଶୋର ଚନ୍ଦ୍ର ରଥ, ଶ୍ୟାମସୁନ୍ଦର ପାଢ଼ୀ ପ୍ରଭୃତିଙ୍କୁ ନେଇ ଛାତ୍ର ସଂଘର ଶାଖା ଗଠନ ହେଲା । କମ୍ୟୁନିଷ୍ଟ ନେତା ବିଜୟ ଚନ୍ଦ୍ର ଦାସ ଛାତ୍ର ଆନ୍ଦୋଳନ, ଛାତ୍ର ସଂଗଠନକୁ ପ୍ରତ୍ୟକ୍ଷ ନେତୃତ୍ୱ ଦେଲେ ।

ଜାତୀୟ ନେତାମାନଙ୍କୁ ଖଲାସ, ଦୁର୍ଭିକ୍ଷ ଦାଉରୁ ବୁଭୁକ୍ଷୁ ଜନତାଙ୍କୁ ରିଲିଫ ସୁବିଧା ଓ ସୁଲଭ ଦରରେ ଛାତ୍ରମାନଙ୍କୁ କାଗଜ ଓ ବସ୍ତ୍ର ଯୋଗାଇ ଦେବା, ଗୁରୁ, ଗାର୍ଡ ଓ ଗାର୍ଡିଅନମାନଙ୍କ ନିପଟ ସାମନ୍ତବାଦୀ ଚିନ୍ତାଧାରା ଓ କଷଣରୁ ଛାତ୍ର ସମାଜକୁ ମୁକ୍ତ କରିବା, ମେକାଲେ ପ୍ରଣାଳୀ, ଗୋଲାମୀ ଶିକ୍ଷା ପ୍ରଣାଳୀ ପରିବର୍ତ୍ତେ ସ୍ୱାଧୀନ ବୈଜ୍ଞାନିକ ଶିକ୍ଷାର ପ୍ରସାର ପ୍ରଭୃତି ମୁଖ୍ୟତଃ ଛାତ୍ର ସଂଘର ଦାବୀ ନେଇ ଜିଲ୍ଲା ଛାତ୍ର ସଂଘ ସଂଗଠିତ ହେବାକୁ ଲାଗିଲା । ଶାନ୍ତି ପ୍ରଗତି ଓ ସ୍ୱାଧୀନତାର ପତାକା ତଳେ ହଜାର ହଜାର ଛାତ୍ର ଜିଲ୍ଲାର ପ୍ରାୟତଃ ସବୁ ଶିକ୍ଷା ଅନୁଷ୍ଠାନରେ ସଂଗଠିତ ହେବାକୁ ଲାଗିଲେ ଏବଂ ଏହି ଆନ୍ଦୋଳନର ଅଗ୍ରଭାଗରେ ଥିଲେ ସାଥୀ ସଦାନନ୍ଦ ମହାନ୍ତି ।

ଏତିକବେଳେ ବ୍ରହ୍ମପୁର ସହରରେ ଟ୍ରେଜକ ମିଲ ଶ୍ରମିକ ସଂଘ, ରାଜମିସ୍ତ୍ରୀ ସଂଘ, ବୁଣାଳୀ ସଂଘ, ଗୁଆକଟାଳୀ ସଂଘ ପ୍ରଭୃତି ଶ୍ରମିକ ସଂଗଠନ ଗଢ଼ିଉଠିଲା । ଏସବୁର ପୁରୋଭାଗରେ ଥିଲେ ତତ୍କାଳୀନ କମ୍ୟୁନିଷ୍ଟ ନେତା ସାଥୀ ବିଜୟ ଚନ୍ଦ୍ର ଦାସ । ବିଜୟ ଚନ୍ଦ୍ର ଦାସଙ୍କୁ ସହଯୋଗ କରୁଥିଲେ ସାଥୀ ସଦାନନ୍ଦ ମହାନ୍ତି ଓ ହରିବନ୍ଧୁ ବେହେରା ପ୍ରମୁଖ ।

ସେତେବେଳେ କମ୍ୟୁନିଷ୍ଟ ଷଡଯନ୍ତ୍ର ମକଦ୍ଦମା ଓ ଅଗଷ୍ଟ ଆନ୍ଦୋଳନରେ ବନ୍ଦୀଥାଇ ମୁକ୍ତିଲାଭ କରୁଥାନ୍ତି କମ୍ୟୁନିଷ୍ଟମାନେ । ସଦାନନ୍ଦ ଓ ତାଙ୍କ ସହକର୍ମୀ ଘନିଷ୍ଠ ବନ୍ଧୁମାନଙ୍କ ତତ୍ତ୍ୱଗୁରୁ ହେଲେ ତତ୍କାଳୀନ ବୁଦ୍ଧିଜୀବୀ କମ୍ୟୁନିଷ୍ଟ ନେତା ବିଜୟ ଚନ୍ଦ୍ର ଦାସ । ତତ୍ତ୍ୱ ସାଙ୍ଗକୁ ତତ୍ତ୍ୱକୁ ରୂପାୟନ କରିବା ଲାଗି କର୍ମକ୍ଷେତ୍ର - କର୍ମ ଆବଶ୍ୟକ । କର୍ମଗୁରୁ ହେଲେ ବିଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଗୋବିନ୍ଦ ପ୍ରଧାନ ଓ ହରିହର ଦାସ ପ୍ରମୁଖ ।

ସ୍ୱାଧୀନତା ପ୍ରାକ୍ କାଳରେ ଜିଲ୍ଲାବ୍ୟାପୀ କୃଷକ ଆନ୍ଦୋଳନ ଗଢ଼ିଉଠିଲା । ଏହିସବୁ ଆନ୍ଦୋଳନର ପୁରୋଭାଗରେ ଥିଲେ ପ୍ରଖ୍ୟାତ କୃଷକ ନେତା ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ହରିହର ଦାଶ, ସାଥୀ ବିଜୟ ଚନ୍ଦ୍ର ଦାସ, ସାଥୀ ରାଧାକୃଷ୍ଣ ପ୍ରଧାନ, ସାଥୀ ଅପର୍ଣ୍ଣା ପାତ୍ର, ସାଥୀ ସୂର୍ଯ୍ୟନାରାୟଣ ଆଚାର୍ଯ୍ୟ, ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ । ଜିଲ୍ଲା ବାହାରୁ ସାଥୀ ଗୁରୁଚରଣ ପଟ୍ଟନାୟକ, ସାଥୀ ସାଧୁଚରଣ ମହାନ୍ତି, ସାଥୀ ମୋହନ ଦାସ ପ୍ରମୁଖ ନେତୃବର୍ଗ ପ୍ରତ୍ୟକ୍ଷ ନେତୃତ୍ୱ ଦେଲେ । ସଦାନନ୍ଦ ମହାନ୍ତି ଓ ତାଙ୍କ

Digitized by srujanika@gmail.com

ସାଥୀମାନେ ପାଇଗଲେ କର୍ମକ୍ଷେତ୍ର, ସଂଗ୍ରାମର କ୍ଷେତ୍ର । ପ୍ରଖ୍ୟାତ ରଇତ ନେତାମାନଙ୍କ ସାଙ୍ଗକୁ ଏମାନେ ହେଲେ ଯୁବ ଯୋଦ୍ଧା । ଗଞ୍ଜାମର ରଇତ ଆନ୍ଦୋଳନ ଓ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରଭାବ ଓ ସଦାନନ୍ଦ ମହାନ୍ତିଙ୍କ ପ୍ରବର୍ତ୍ତନାରେ ତାଙ୍କର ଦୁଇ ବଡ ଭାଇ ଅନ୍ତର୍ଯ୍ୟାମୀ ମହାନ୍ତି ଓ ନିତ୍ୟାନନ୍ଦ ମହାନ୍ତି ମଧ୍ୟ ସଂଗ୍ରାମରେ ଝାସ ଦିଅନ୍ତି ।

ସାଥୀ ସଦାନନ୍ଦ ଦାୟିତ୍ୱ ନିଅନ୍ତି ଜିଲ୍ଲା ସମ୍ପାଦକ ଭାବେ । ଗଞ୍ଜାମରେ ଆଗରୁ ଥିଲେ ହରିହର ଦାଶ, ପରେ ଦୁର୍ଗାକୃଷ୍ଣ ପଣ୍ଡା । ତା'ପରେ ସଦାନନ୍ଦ ମହାନ୍ତି ଗଞ୍ଜାମ ପାର୍ଟିର ଏକ ଅଭିବୃଦ୍ଧିର ପର୍ଯ୍ୟାୟରେ ୧୯୬୫ ଯାଏଁ ପାର୍ଟିକୁ ନେତୃତ୍ୱ ଦିଅନ୍ତି । ୧୯୬୫ରେ ଆସିକାରେ ରାଜ୍ୟ ପାର୍ଟି ସମ୍ମିଳନୀ । ସେଠି ସେ ନିର୍ବାଚିତ ହୁଅନ୍ତି ରାଜ୍ୟ ସମ୍ପାଦକ ଭାବେ ୧୯୬୫ରୁ ୬୮ । ଆସିକାରୁ ବରଗଡ଼ ୧୯୭୩ରୁ ୮୬ । ପୁରୀରୁ ବ୍ରଜରାଜ ନଗର ପାଦ ପଥ । ଜାତୀୟ କ୍ଷେତ୍ରରେ ପାର୍ଟିର ଜାତୀୟ ପରିଷଦ ସଭ୍ୟ । ରାଜ୍ୟ ପାର୍ଟି କଂଟ୍ରୋଲ୍ କମିଶନର ଚେୟାର୍‌ମେନ୍ ।

ସେ ଦୁଇଥର କବିସୂର୍ଯ୍ୟନଗର ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ବିଧାନସଭାରେ ଜନସାଧା-ରଣଙ୍କ ସ୍ୱାର୍ଥକୁ ରକ୍ଷା କରିବାଲାଗି ସେ ସଂଗ୍ରାମ ଚଳାଇଥିଲେ । ତାଙ୍କର ବକ୍ତୃତା ବିଧାନ ସଭାରେ ସବୁ ଦଳ ଦ୍ୱାରା ପ୍ରଶଂସନୀୟ ହୋଇ ପାରୁଥିଲା ।

ସାଥୀ ସଦାନନ୍ଦ ମହାନ୍ତି ଜୀବନ ସ୍ମୃତି କହିଲେ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକଳାପ ସହ ମୋଟାମୋଟି ଭାବେ ଜଡ଼ିତ । ଗଞ୍ଜାମ ପାର୍ଟି ବହୁ ଉତ୍‌ଥାନ ପତନ ଦେଇ ଗତି କରିଛି, ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇଛି, ବହୁ ଆନ୍ଦୋଳନ ବିଜୟମଣ୍ଡିତ କରିଛି— ସେସବୁ ସହ ସାଥୀ ସଦାନନ୍ଦ ମହାନ୍ତି ପ୍ରତ୍ୟକ୍ଷ ଭାବେ ଜଡ଼ିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏପରିକି ପାର୍ଟି ଯେତେବେଳେ ଯେଉଁ ନିଷ୍ପତ୍ତି କରିଛି ତାହା ନିଷ୍ଠାର ସହ ସେ କାର୍ଯ୍ୟ କରିବାକୁ ସେ କେବେ ପଛାଇ ନାହାନ୍ତି । ନୀଳଗିରିର ସଶସ୍ତ୍ର ସଂଗ୍ରାମରେ ଯୋଗଦେବା ଠାରୁ ଜୟପୁରର ଶ୍ରମିକ ଆନ୍ଦୋଳନ ଯାଏଁ ସେ କେବେ ପଶ୍ଚାଦ୍‌ଗାମୀ ହୋଇନାହାନ୍ତି । ଗଞ୍ଜାମ ଜିଲ୍ଲାରୁ ରାଜ୍ୟ ପାର୍ଟି ସମ୍ପାଦକ ଯାଏଁ ସେ ଦାୟିତ୍ୱ ନେଇଥିଲେ । ଦେଶରେ ଏକ ନୂତନ ସମାଜ-ଶୋଷଣହୀନ ସମାଜ-ସମାଜବାଦୀ ଦୁନିଆ ଗଠନ ପାଇଁ ନିଜର ଜୀବନକୁ ତିଳ ତିଳ କରି ଉତ୍ସର୍ଗ କରି ଦେଇଥିଲେ ।

ଏପରି ଏକ ଉତ୍ସର୍ଗୀକୃତ ଜୀବନର ଅବସାନ ହେଲା ୧୬ ନଭେମ୍ବର ୧୯୯୧ରେ ।

---

## ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟ

ତ୍ୟାଗବହୁଳ, ସର୍ବଜନପ୍ରିୟ, ଶିକ୍ଷାଦାନରେ ସ୍ୱନାମଧନ୍ୟ ଶିକ୍ଷକ ଜୀବନରୁ ଓଡ଼ିଶାରେ ମୁଖ୍ୟମନ୍ତ୍ରୀତ୍ୱର ଦାୟିତ୍ୱ ବହନ ଯାଏ, ଜଣେ କର୍ମମୟ ବ୍ୟକ୍ତି ବିନାୟକ ଆଚାର୍ଯ୍ୟଙ୍କର ଜୀବନାବସାନ ଘଟିଛି । ବିନାୟକ ବାବୁଙ୍କର କୃତିତ୍ୱ କେବଳ ଏତିକରେ ସୀମାବଦ୍ଧ ନଥିଲା । ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ନଥିଲେ ହେଁ କମ୍ୟୁନିଷ୍ଟ ଆଦର୍ଶରେ ଅନୁପ୍ରାଣିତ ହୋଇ ଏବଂ ଶିକ୍ଷକତା ବେଳେ ଦେଶ ଓ ଜାତିର ମୁକ୍ତିଲାଗି, ଶୋଷଣ ଅତ୍ୟାଚାରର ବିଲୋପ ପାଇଁ କମ୍ୟୁନିଷ୍ଟମାନଙ୍କର ଦେଶପ୍ରେମ, ଆଦର୍ଶ ପ୍ରତି ଅନୁରକ୍ତି, ସାହାସିକତା, ନିର୍ମଳତା ପ୍ରତି ଆକୃଷ୍ଟ ହୋଇ ରାଜନୀତିକୁ ଆସିଲେ । କଂଗ୍ରେସ ସଂଗଠନର ବିଭିନ୍ନ ପଦପଦବୀରେ ଏବଂ ବିଧାନ-ସଭାରେ ନାନା ଉଚ୍ଚସ୍ତର ଦାୟିତ୍ୱ ବହନ କରି ମୁଖ୍ୟମନ୍ତ୍ରୀ ହୋଇଥିଲେ । ଓଡ଼ିଶାରେ ଅତୀତରେ ବହୁ ମୁଖ୍ୟମନ୍ତ୍ରୀ ହୋଇଛନ୍ତି ମାତ୍ର ବିନାୟକ ବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ଥିଲା ଏକ ବୈଶିଷ୍ଟ୍ୟ ! ସେ ଥିଲେ ଜଣେ ଭଦ୍ର, ନମ୍ର, ନିରାଡ଼ମ୍ବର, ମିଷ୍ଟଭାଷୀ, ଅକପଟ ମୁଖ୍ୟମନ୍ତ୍ରୀ । ଖାଲି ସେତିକି ନୁହେଁ ଶିକ୍ଷକତା କାଳରୁ ଏବଂ କମ୍ୟୁନିଷ୍ଟମାନଙ୍କ ସଂପର୍କରେ ଆସି ପରେ ଶାସକ କଂଗ୍ରେସରେ ଏବଂ ପରେ ଜନତା ଦଳରେ ଯୋଗଦେଲେ ସୁଦ୍ଧା ସେ ଥିଲେ ଜଣେ ଆନ୍ତର୍ଜାତୀୟତାବାଦୀ ଶାନ୍ତିର ଏକନିଷ୍ଠ ଯୋଦ୍ଧା । ବିଶ୍ୱଶାନ୍ତି ପାଇଁ ଯୁଦ୍ଧ ବିରୁଦ୍ଧରେ ଯୁଦ୍ଧଖୋର ଆମେରିକା ଓ ଅନ୍ୟ ସାମ୍ରାଜ୍ୟବାଦୀମାନଙ୍କ ବିରୁଦ୍ଧରେ ଏବଂ ସମାଜବାଦୀ ଦେଶ ଓ ପ୍ରଗତିଶୀଳ ଗୋଷ୍ଠୀ ନିରପେକ୍ଷ ଦେଶଗୁଡ଼ିକ ସହିତ ବନ୍ଧୁତାକୁ ଦୃଢ଼ତର କରିବା ସଂଗ୍ରାମରେ ଜଣେ ଅଗ୍ରଣୀ ନେତା ଥିଲେ ।

Digitized by srujanika@gmail.com



# ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ

ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ ଏକ ଅମ୍ଳାନ ପ୍ରତିଭ, ଏକ ସଂଗ୍ରାମୟ, ଜୀବନର ମୂର୍ତ୍ତିମନ୍ତ ପ୍ରତୀକ, ଏକ ନିରବଚ୍ଛିନ୍ନ ଜନସେବା—ଜନସ୍ୱାର୍ଥ ସାଧକର ପ୍ରକୃଷ୍ଟ ସଂକେତ । "ଗୌତମୀ ସର୍ଦ୍ଦାର", "ସର୍ଦ୍ଦାର ବୁଢ଼ା" ଓ "ନିଶୁଣ ବୁଢ଼ା" ଆଦି ଗଞ୍ଜାମର କୋଣ ଅନୁକୋଣ କାହିଁକି, ସମଗ୍ର ଓଡ଼ିଶାରେ ଶ୍ରଦ୍ଧା, ସ୍ନେହ, ଭକ୍ତି ଓ ଆଦରର ନାମ । ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ ନିରବଚ୍ଛିନ୍ନ ଭାବରେ ନିଜର ସମଗ୍ର ଜୀବନକାଳ ଜନସ୍ୱାର୍ଥ ସାଧନର ସଂଗ୍ରାମରେ ନିଜକୁ ସଂପୂର୍ଣ୍ଣ ଭାବେ ସାମିଲ୍ କରାଇ ଦେଇଥିଲେ ।

ସାଥୀ ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ ଗଞ୍ଜାମ ଜିଲ୍ଲା ଦିଗପହଣ୍ଡି ତହସିଲ ଅନ୍ତର୍ଗତ ଗୌତମୀ ଗ୍ରାମରେ ୧୯୦୬ ମସିହା ଜୁନ୍ ୧୦ ତାରିଖରେ ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସର୍ଦ୍ଦାର ଭିକାରୀ ରଣସିଂହ ଏବଂ ମାତାଙ୍କ ନାମ ସାବିତ୍ରୀ ଦେବୀ । ସର୍ଦ୍ଦାର ଭିକାରୀ ରଣସିଂହ ଥିଲେ ତତ୍କାଳୀନ ବଡଖେମୁଣ୍ଡି ଜମିଦାରଙ୍କର ଗୌତମୀ ପାଇକ ସର୍ଦ୍ଦାର । ଭିକାରୀ ରଣସିଂହଙ୍କର ପୁଅ ପ୍ରତି ଥିଲା ଅତ୍ୟନ୍ତ ସ୍ନେହ ଓ ଆଦର । ସେଥିପାଇଁ ସେ ଚାହିଁଲେ ପୁଅ କିଛି ପାଠପଢ଼ୁ, ଜ୍ଞାନ ଅର୍ଜନ କରୁ । ତେଣୁ ଗାଁ ଚାଟଶାଳୀରେ ନା ଲେଖା ହେଲା । ଦଣ୍ଡପାଣି ସ୍ୱାଇଁ ଗାଁ ବିଦ୍ୟାଳୟରୁ ପଞ୍ଚମ ଶ୍ରେଣୀ ପାସ୍ କଲେ ।

୧୯୨୦ ପ୍ରାଥମିକ ଶିକ୍ଷା ସମାପ୍ତ ପରେ ୧୯୨୪ ରେ ଦଣ୍ଡପାଣି ସ୍ୱାଇଁ ପଦୁତୋଳା ପ୍ରାଥମିକ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତି ପାଇଲେ । ଦୁଇବର୍ଷ ଶିକ୍ଷକତା କଲାପରେ ୧୯୨୬ ରେ ଆନନ୍ଦ ଦଳାଇ ସେହି ସ୍କୁଲକୁ ପ୍ରଧାନ ଶିକ୍ଷକ ଭାବେ ଆସିବାରୁ ସର୍ଦ୍ଦାରଜୀ ସେହି ବର୍ଷ ଗୌତମୀରେ ଏକ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରି ସେଠାରେ ଶିକ୍ଷକତା କଲେ । ୧୯୩୪ ରୁ ୩୬ ଯେ ବ୍ରହ୍ମପୁରରୁ ଲୋଏର ଟ୍ରେନିଙ୍ଗ (ଶିକ୍ଷକ ତାଲିମ) ନେଇ ତାଲିମପ୍ରାପ୍ତ ଶିକ୍ଷକ ଭାବରେ କାର୍ଯ୍ୟ କଲେ । ମାସିକ ଦରମା ପାଞ୍ଚ ଟଙ୍କା । ଚାଷକାମ ଓ ଅନ୍ୟାନ୍ୟ ସାମୁହିକ କାର୍ଯ୍ୟ ବା ସାଂଗଠନିକ କାର୍ଯ୍ୟରେ ବେଶି ମାତ୍ରାରେ ଅଂଶ ଗ୍ରହଣ କରିବାକୁ ପଡୁଥିଲା ।

ସେତେବେଳକୁ ଭାରତରେ ଇଂରେଜ ସରକାରର ଅଖଣ୍ଡ ଗର୍ଜନ । ମୋଗଲ୍ ବନ୍ଦୀ ଅଞ୍ଚଳରେ ବ୍ରିଟିଶ ସରକାରର ଦଲାଲ ଜମିଦାର । ଖଜଣା ଆଦାୟ ପାଇଁ ଜମିଦାର ସୃଷ୍ଟି କରିଥାଏ ତାଲୁକଦାର, ମାଲୁକଦାର, ଇନାମଦାର ଓ ମୁସ୍ତାଦାର ଆଦି । ଏମାନଙ୍କ ଅଧିନରେ ପାଇକ, ପିଆଦା ଆଦି । ଏ ସମସ୍ତ ବ୍ୟବସ୍ଥା ଚାଷୀଠୁ ଖଜଣା ଆଦାୟ ପାଇଁ । ନିୟମିତ ଖଜଣା ବାଦେ ବେଠି, ଭେଟି, ଆଦି ନାନା କଥା । ଏ ସବୁଥିରେ ସନ୍ତୁଳି ହୋଇ ବାରମାସୀ ଚାଷୀ ପରିବାରକୁ ମିଳେ ମାତ୍ର କୁଲା, ପହଁର । ତା ସାଙ୍ଗକୁ ପୁଣି ଲାଞ୍ଛନା, ସ୍ତ୍ରୀମାନଙ୍କ ଇଜ୍ଜତହାନୀ । ପାଇକ ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ବିଦ୍ୟା ଅଧ୍ୟୟନ କାଳରୁ ସର୍ଦ୍ଦାରଜୀ ଏସବୁକୁ ସହ୍ୟକରି ପାରୁନଥାନ୍ତି । ସେତେବେଳକୁ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସର ବ୍ରିଟିଶ ବିରୋଧି ପ୍ରଚଣ୍ଡ ରଣହୁଙ୍କାର, ଅହିଂସା ମାର୍ଗରେ । ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ସର୍ଦ୍ଦାରଜୀ ୧୯୨୧ ରେ କଂଗ୍ରେସରେ ଯୋଗ ଦିଅନ୍ତି ।

ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କୁ ଯଦି ଭାରତ ମାଟିରୁ ହଟାଇ ଦିଆଯାଏ, ତା' ହେଲେ ଦେଶ ଭିତରେ ଥିବା ମଧ୍ୟ ସତ୍ତାଧିକାରୀ ବ୍ୟବସ୍ଥା ଦୁର୍ବଳ ହେବ ଏବଂ ତାର ଉଚ୍ଛେଦର ମାର୍ଗ ସୁଗମ ହୋଇପାରିବ । ଏହି ଆତ୍ମବିଶ୍ୱାସ ନେଇ ସେ କଂଗ୍ରେସରେ ଯୋଗଦେଇ ଜମିଦାର—ମୁସ୍ତାଦାର ପ୍ରଥା ବିରୋଧୀ ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କଲେ ।

Digitized by srujanika@gmail.com

ସେତେବେଳେ ଗଞ୍ଜାମରେ ଦୁଇଟି କୃଷକ ସଂଗଠନ ରହିଥିଲା । ବିଶ୍ୱନାଥ ଦାଶଙ୍କ ସଭାପତିତ୍ୱରେ ଜମିଦାର ରୟତ ସଭା, ଯା'ର ସଂପାଦକ ଥିଲେ ଗୋବିନ୍ଦ ପ୍ରଧାନ । ଅନ୍ୟଟି ଥିଲା ଓଡଶା ରାଜ୍ୟ କୃଷକ ସଭାର ଗଞ୍ଜାମ ଜିଲ୍ଲା ସଂଗଠନ । ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ ଏହି ସଂଗଠନ ସହିତ ନିଜକୁ ସାମିଲ୍ କରିଥିଲେ । ଜମିଦାରୀ ରୟତ ସଭାର ସଂପାଦକ ଗୋବିନ୍ଦ ପ୍ରଧାନ ପରେ ଉପଲବ୍‌ଧି କଲେ ଯେ, ସେହି ସଂଗଠନ ଗରୀବ ଚାଷୀ, କୃଷି ଶ୍ରମିକଙ୍କ ସ୍ୱାର୍ଥପ୍ରତି ଆଖିବୁଜି ଦେଇ କେବଳ ଧନୀଚାଷୀଙ୍କ ସ୍ୱାର୍ଥ ସାଧନ କରିବାରେ ଲାଗିଛି । ତେଣୁ ସେ ସେଥିରୁ ଇସ୍ତଫା ଦେଇ ଗଞ୍ଜାମ ଜିଲ୍ଲା କୃଷକ ସଭାରେ ଯୋଗଦେଲେ । ତାଙ୍କ ନେତୃତ୍ୱରେ ଗଞ୍ଜାମ ଜିଲ୍ଲା ରୟତ ଆନ୍ଦୋଳନ ଲଗାତାର ଭାବେ ଚାଲିଥିଲା । ଖେମୁଣ୍ଡି ଅଞ୍ଚଳରେ ମୁସ୍ତାଦାରଙ୍କ ଅତ୍ୟାଚାରରୁ ଚାଷୀମାନଙ୍କୁ ରକ୍ଷା କରିବା ଆନ୍ଦୋଳନରେ ଦଣ୍ଡପାଣି ସ୍ୱାଇଁଙ୍କ ସହିତ ଜୁର୍ ପାତ୍ର, ବୀର ଜେନା ଆଦି ମିଶି ଏହାକୁ ଏକ ଗଣ ଆନ୍ଦୋଳନରେ ପରିଣତ କରିବାରେ ସହାୟତା କରିଥିଲେ ।

କେରଣ୍ଡିମାଳ ଆଦିବାସୀମାନଙ୍କୁ ସାହୁକାର ଓ ସରକାରୀ କର୍ମଚାରୀ ବିଶେଷ କରି ଜଙ୍ଗଲ ବିଭାଗୀୟ କର୍ମଚାରୀଙ୍କ ଲୁଣ୍ଠନ ଓ ଜୁଲମରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଜୀବନ ଧାରଣର ମାନ ଉନ୍ନତି କରିବା ଲକ୍ଷରେ କେରଣ୍ଡିମାଳ ଆଦିବାସୀ ସଭା ଦଣ୍ଡପାଣି ସ୍ୱାଇଁଙ୍କ ନେତୃତ୍ୱରେ ଗଠିତ ହୋଇଥିଲା । ସାଥୀ ନଟବର ମଳିକ ଓ ସାଥୀ ନନ୍ଦକିଶୋର ପ୍ରଧାନ ଏହାର ସଭାପତି, ସଂପାଦକ ଥିଲେ ।

ସାଂସ୍କୃତିକ କ୍ଷେତ୍ରରେ ସର୍ଦ୍ଦାରଜୀଙ୍କ ଅବଦାନ ମଧ୍ୟ ଅତୁଳନୀୟ । ଯେତେବେଳେ ଓଡଶାର ଏକ ସ୍ଥାୟୀ ରଙ୍ଗମଞ୍ଚ ନଥିଲା, ସେତେବେଳେ ସର୍ଦ୍ଦାରଜୀ ଗୌତମୀଠାରେ "ବାଳ ବିନୋଦ ରାସ ସମିତି" ଗଠନ କରି ବିଭିନ୍ନ ଗୀତାଭିନୟ ଓ ନାଟକମାନ ଗଞ୍ଜାମ ଜିଲ୍ଲାର ବିଭିନ୍ନ ସ୍ଥାନରେ ପ୍ରଦର୍ଶନ କରାଉଥିଲେ ।

ବ୍ରିଟିଶ ସମ୍ରାଜ୍ୟବାଦକୁ ଭରତ ଭୂଇଁରୁ ହଟାଇବା ପାଇଁ କଂଗ୍ରେସରେ ଯୋଗ ଦେଇଥିଲେ ମଧ୍ୟ ନିଜର ବାମପନ୍ଥୀ ମନୋଭାବ ସର୍ବଦା ରହି ଆସିଛି । ବିଶେଷ କରି କଂଗ୍ରେସ ଭିତରେ "କଂଗ୍ରେସ ସମାଜବାଦୀ ଦଳ" ର ଆବିର୍ଭାବ ଏବଂ ମୋହନ ଦାସଙ୍କ ନେତୃତ୍ୱରେ କମ୍ୟୁନିଷ୍ଟ ମତବାଦର ପ୍ରଚାର ତାଂକ ବାମପନ୍ଥୀ ମନୋଭାବକୁ ଟାଣୁଥାଏ । ୧୯୪୩ ରେ ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ଓ ଗୌତମୀରେ ପାର୍ଟିସେଲ ଗଠନ କରି ଗାଁ ଗାଁ ବୁଲି କୃଷକ ସଂଗଠନ ଓ ପାର୍ଟି ସଂଗଠନ ପାଇଁ ଅନବରତ ଲାଗିପଡ଼ିଲେ ।

ଗଞ୍ଜାମ ଜିଲ୍ଲାରେ ଶିକ୍ଷାର ପ୍ରସାର ପାଇଁ ତାଙ୍କର ଅବଦାନ ଅତୁଳନୀୟ । ଗୌତମୀ ହାଇସ୍କୁଲ ଠାରୁ ଆରମ୍ଭ କରି ଜିଲ୍ଲାର ବିଭିନ୍ନ ସ୍ଥାନରେ ବହୁ ସ୍କୁଲ ପ୍ରତିଷ୍ଠା କରିବାରେ ନେତୃତ୍ୱ ନେଇ ଯାଇଛନ୍ତି । ଶିକ୍ଷକମାନଙ୍କ ସଂଗଠନକୁ ଗଢ଼ିଛନ୍ତି । ୧୯୫୧ ରେ ଗୌତମୀ ଠାରେ ଗଞ୍ଜାମ ଜିଲ୍ଲା ପ୍ରାଥମିକ ଶିକ୍ଷକ ସମ୍ମିଳନୀ କରାଇଥିଲେ ।

ତାଙ୍କ ସଂପାଦନାରେ ଗୌତମୀରୁ ଏକ ସାମୟିକ ସଂବାଦ ଓ ଅଭିମତ ପତ୍ରିକା 'ଜନମତ' ପ୍ରକାଶିତ ହେଉଥିଲା । ଜନସାଧାରଣଙ୍କ ନଗଦ ସମସ୍ୟାମାନ ସେ ଏଥିରେ ସ୍ପଷ୍ଟ ରୂପେ ପ୍ରକାଶ କରୁଥିଲେ । କେତୋଟି ସଂଖ୍ୟା ପ୍ରକାଶିତ ହେବା ପରେ କୌଣସି ଖଳ ପ୍ରକୃତିର ଲୋକଙ୍କ ଚକ୍ରାନ୍ତରେ ଏହାର ପ୍ରକାଶନ ବନ୍ଦ ହୋଇ ଯାଇଥିଲା ।

୧୯୬୪ ସାଲରେ ସୋଭିଏତ ସରକାରଙ୍କ ନିମନ୍ତ୍ରଣ କ୍ରମେ ସେ ଏକ ପ୍ରତିନିଧି ଦଳରେ ସୋଭିଏତ୍ ଋଷ୍ ପରିଭ୍ରମଣରେ ଯାଇଥିଲେ । ଓଡଆ ଭାଷା ବ୍ୟତୀତ କୌଣସି ଭାଷା ଜାଣିନଥିଲେ ମଧ୍ୟ ପରିଭ୍ରମଣ କାଳରେ ସେ କୌଣସି ଅସୁବିଧାର ସମ୍ମୁଖୀନ ହୋଇନଥିଲେ ।

ସେ ଗୌତମୀ ଗ୍ରାମ ପଞ୍ଚାୟତର ପ୍ରଥମ ସରପଞ୍ଚ ଥିଲେ । ପଞ୍ଚାୟତ ସମିତି ପ୍ରବର୍ତ୍ତନ ହେବା ଫଳରେ ସେ ୧୯୬୧ ରୁ ୧୯୬୭ ସାଲ ଯାଏଁ ସାନଖେମୁଣ୍ଡି ପଞ୍ଚାୟତ ସମିତିର ସଭାପତି ହୋଇଥିଲେ । ୧୯୬୭ ଓଡଶା ବିଧାନସଭା ନିର୍ବାଚନରେ ସେ କବିସୂର୍ଯ୍ୟନଗର ନିର୍ବାଚନ ମଣ୍ଡଳୀରୁ କମ୍ୟୁନିଷ୍ଟ ପାର୍ଟିର ପ୍ରାର୍ଥୀ ରୂପେ ଓଡଶା ବିଧାନସଭାକୁ ନିର୍ବାଚିତ ହୋଇ ୧୯୭୧ ଯାଏ ଓଡଶା ବିଧାନସଭାର ସଦସ୍ୟ ରହିଥିଲେ ।

ଭାରତରେ ସମାଜବାଦୀ ବ୍ୟବସ୍ଥାର ପ୍ରବର୍ତ୍ତନ ପୂର୍ବକ ଶୋଷଣହୀନ, ଶ୍ରେଣୀହୀନ ସମାଜ ପ୍ରତିଷ୍ଠାର ଲକ୍ଷନେଇ ସେ ସାରାଜୀବନ କାର୍ଯ୍ୟକରି ଆସୁଥିଲେ । ତାଙ୍କର ଦୃଢ଼ ବିଶ୍ୱାସ ଥିଲା ସେ, ଏହି ଲକ୍ଷ୍ୟ ଖୁବ୍ ଶୀଘ୍ର ସାଧିତ ହୋଇପାରିବ । ୧୯୮୭ ମସିହା ଅଗଷ୍ଟ ୭ ତାରିଖରେ ତାଙ୍କର ମହାପ୍ରୟାଣ ଘଟିଲା ।

●

Digitized by srujanika@gmail.com



# ଶହୀଦ ସାଥୀ ଉଦୟ ମହାଙ୍କୁଡ଼

ସାହାପୁର ଗାଁରେ ସାଥୀ ଉଦୟ ଏକ ଗରିବ ମୂଲିଆ ଘରେ ଜନ୍ମଗ୍ରହଣ କରିଥିଲେ । ସେ ଗାଁର ପ୍ରାଇମେରୀ ସ୍କୁଲରେ ପାଠପଢ଼ା ଶେଷ କରି ଦାରିଦ୍ର୍ୟର କଷାଘାତ ଏବଂ ଅଭାବ ଅନାଟନ ଯୋଗୁଁ ଅଧିକ ପାଠ ପଢ଼ିବାର ସୁଯୋଗ ପାଇଲେ ନାହିଁ । ନିଜ ଗାଁରେ ପେଟ ପୋଷିବା ସମ୍ଭବପର ନ ହେବାରୁ ସେ କଲିକତା ଯାଇ ଏକ କାରଖାନାରେ ଶ୍ରମିକ ଭାବେ ଯୋଗ ଦେଲେ । ସେଠାରେ ଶ୍ରମିକ ଆନ୍ଦୋଳନ ଓ ଟ୍ରେଡ୍ ୟୁନିୟନ କାର୍ଯ୍ୟକଳାପରେ ସକ୍ରୀୟ ଭାଗନେବା ଯୋଗୁଁ ମାଲିକର କୋପ ଦୃଷ୍ଟି ପଡ଼ଲା ଏବଂ ପରିଶେଷରେ କଲିକତାରୁ ବିଦାୟ ନେଇ ଯୁବକ ଉଦୟ ନିଜ ଗାଁକୁ ଫେରିଲେ ।

ସାହାପୁର ଠାରୁ ପୂର୍ବଦିଗକୁ ଗଲେ ଘଟକୁମରଡ଼ା । ଏହାର ନିକଟରେ କଦାଳପଲ୍ଲୀ, ନାଇଡ଼ୁପଲ୍ଲୀ ଓ ଶାର୍ଗୁଣାପଲ୍ଲୀ । ଗଞ୍ଜାମ ରୟତ ଆନ୍ଦୋଳନ ତଥା ବହୁ ଚାଷୀ ଆନ୍ଦୋଳନର ପୀଠସ୍ଥଳୀ । ପ୍ରାତଃ ସ୍ମରଣୀୟ ଗୋବିନ୍ଦ ପ୍ରଧାନ ଓ ସାଧୁ ମହାନ୍ତି ପ୍ରମୁଖ କମ୍ୟୁନିଷ୍ଟ ପାର୍ଟି ନେତୃବୃନ୍ଦ ଏହି ଅଞ୍ଚଳରେ ଘରେ ଘରେ ପରିଚିତ । କମ୍ୟୁନିଷ୍ଟ ଓ କୃଷକ ସଭ ନେତୃତ୍ୱରେ ବିରାଟ ଭାଗଚାଷୀ ଆନ୍ଦୋଳନ ଫଳରେ ଗାଁ ଗାଁର ଚାଷୀମାନେ ଜମିର ମାଲିକ ହେଲେ । ସାମନ୍ତବାଦୀ ଶୋଷଣ ଉପରେ କୁଠାରଘାତ କରି "ଲଙ୍ଗଳ ଯା'ର ଜମି ତା'ର" ସ୍ଲୋଗାନରେ ହଜାର ହଜାର ଚାଷୀ ମୂଲିଆ ଆକୃଷ୍ଟ ହେଲେ । ସାହାପୁର ଗାଁର ମଠ ଜମିରେ ଚାଷୀମାନେ ହକ୍ ସାବ୍ୟସ୍ତ, ସିଲିଂ ବହିର୍ଭୂତ ଜମି ଗରିବ ଜମିହୀନଙ୍କ ମଧ୍ୟରେ ବଣ୍ଟନ ପ୍ରଭୃତି ଲାଗି ଆନ୍ଦୋଳନ ତୀବ୍ର ଆକାର ଧାରଣା କଲା । ସେଇ ଗାଁରେ ବଡ଼ ସଭମାନ ଅନୁଷ୍ଠିତ ହେଲା । ଏହିସବୁ ଆନ୍ଦୋଳନର ପ୍ରଭବ ପଡ଼ଲା । କଲିକତା ଶ୍ରମିକ ଆନ୍ଦୋଳନରେ ଯୋଗଦେଇ ଫେରିଥିବା ସାଥୀ ଉଦୟନାଥ ମହାଙ୍କୁଡଙ୍କ ଉପରେ । ସେ ଚାଷୀ ମୂଲିଆଙ୍କ ଆନ୍ଦୋଳନରେ ଯୋଗ ଦେଲେ । ନିଜ ପରିବାରର ଭରଣପୋଷଣ ପାଇଁ ସେ ଯେଉଁ ଛୋଟ ହୋଟେଲଟିଏ କରି ଜୀବିକାନିର୍ବାହ କରୁଥିଲେ ତାହା ମଧ୍ୟ ହରାଇଲେ । ସେ ୧୯୭୪ ରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ ।

ପାର୍ଟି ସଭ୍ୟ ହେବା ପରେ ନିଜ ଅଞ୍ଚଳର ଗରିବ ଜନସାଧାରଣଙ୍କ ସମସ୍ତ ନ୍ୟାୟସଙ୍ଗତ ସମସ୍ୟା, ଦାବୀନେଇ ଆନ୍ଦୋଳନରେ ଅଗ୍ରଣୀ ଭୂମିକା ଗ୍ରହଣ କଲେ । ସେଥିଲାଗି ବହୁବାର କାରାବରଣ କରିବାକୁ ପଡ଼ଲା । ଏକାଧିକବାର ତାଙ୍କୁ ଜମି ମାଲିକମାନେ ନାନାରକମ ମିଥ୍ୟା ମକଦ୍ଦମାରେ ମଧ୍ୟ ପକାଇବାରେ ଷଡଯନ୍ତ୍ର କରିଥିଲେ । ସାହୁକାରମାନଙ୍କର ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ଗରିବ ଜନସାଧାରଣଙ୍କୁ ସଂଗଠିତ କରି ସେମାନଙ୍କୁ ରାଜନୈତିକ ଭାବେ, ଆନ୍ଦୋଳନ ଭିତରେ ସଚେତନ କରାଇ ଅଞ୍ଚଳରେ ଜଣେ ସୁଦକ୍ଷ ପାର୍ଟି ସଂଗଠକ ଭାବେ ସେ ପରିଗଣିତ ହେଲେ ।

ସେ ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ହିଞ୍ଜିଳି-ପୁରୁଷୋତ୍ତମପୁର ଆଞ୍ଚଳିକ କମିଟିର ସଂପାଦକ ଭାବେ ସାତ ଥର ଲଗାତର ଭାବେ ପୁନଃନିର୍ବାଚିତ ହୋଇଥିଲେ ଏବଂ ଜିଲ୍ଲା କାର୍ଯ୍ୟକାରୀ କମିଟି ସଭ୍ୟ ଓ ରାଜ୍ୟ ପରିଷଦ ସଭ୍ୟ ମଧ୍ୟ ଥିଲେ । ତାଙ୍କର ସାହସ, ନିର୍ଭୀକତା ଓ ଗରିବ ଲୋକଙ୍କ ପ୍ରତି ଦରଦୀଭାବ ସର୍ବୋପରି ମାନବିକତା ଭାବଯୋଗୁଁ ସାଥୀ ଉଦୟ ଗରିବ ଗରଡ଼ ଘରେ ଜନ୍ମ ହୋଇ ମଧ୍ୟ ସବୁ ଶ୍ରେଣୀର ଲୋକଙ୍କ ପାଖରେ ପ୍ରିୟପାତ୍ର ଥିଲେ । ଅଧିକ ପାଠପଢ଼ ନଥିଲେ ମଧ୍ୟ ମାର୍କସ୍‌ବାଦ ଉପରେ ତାଙ୍କର ଦୃଢ଼ ବିଶ୍ୱାସ, ସଂଗଠନ ଓ ଆନ୍ଦୋଳନ ଜରିଆରେ ସମାଜର ପରିବର୍ତ୍ତନ ପାଇଁ ଅହରହ ଉଦ୍ୟମ ଯୋଗୁଁ ସେ ପଢ଼ୁଆମାନଙ୍କ ମଧ୍ୟରେ ଛାତ୍ର ଓ ଅଫିସର ମହଲରେ ମଧ୍ୟ ବେଶ ଆଦୃତ ଥିଲେ । ସେ ଅତ୍ୟନ୍ତ ଦୈନ ଭାବରେ ପରିବାର ପୋଷଣ କରୁଥିଲେ ମଧ୍ୟ ପ୍ରତ୍ୟେକ ମୁହୂର୍ତ୍ତରେ ଜନସାଧାରଣଙ୍କ ପାଇଁ ଉତ୍ସର୍ଗ କରିଥିଲେ । ପ୍ରକୃତ ଅର୍ଥରେ ସେ ଥିଲେ ପାର୍ଟିର ଜଣେ ସଦାବେଳିଆ କର୍ମୀ ଯାହାଙ୍କୁ ପେଷାଦାର ବିପ୍ଳବୀ ବୋଲି କହିଥିଲେ ମଧ୍ୟ ଭୁଲ ହେବ ନାହିଁ । କାରଣ ଦିନରାତି ନଭବି, ନିଜର ସ୍ୱାସ୍ଥ୍ୟ ପ୍ରତି ଭ୍ରୂକ୍ଷେପ ନକରି ଜୀବନକୁ ଉତ୍ସର୍ଗ କରିଥିଲେ ସମାଜ ପାଇଁ ।

Digitized by srujanika@gmail.com

ଏପରି ଜଣେ ସଂଗ୍ରାମୀ କର୍ମୀ ଆଜି ସମାଜରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ସାହାପୁର ଗାଁର ମୁଷ୍ଟିମେୟ ଜମି ମାଲିକ ଷଡଯନ୍ତ୍ର କରୁଥିଲେ ତାଙ୍କୁ ଜୀବନରେ ମାରିଦେବା ପାଇଁ । ୧ ଅକଟୋବର ୧୯୯୪ ଦିନ ଅମାନିଆ ସାଥୀ ଉଦୟ ନିର୍ଭୟରେ ପୁରୁଷୋତ୍ତମପୁରରୁ ନିଜ ଗାଁକୁ ଫେରୁଥିବା ବେଳେ ଗାଁ ମୁଣ୍ଡରେ ହତ୍ୟାକାରୀମାନେ ପ୍ରଥମେ ବୋମା ଫିଙ୍ଗି କ୍ଷତବିକ୍ଷତ କଲେ ଏବଂ ତା'ପରେ ଖଣ୍ଡାରେ ହାଣି ରକ୍ତର ହୁଆରରେ ଭସାଇ ଦେଲେ । ଗଞ୍ଜାମ ଜିଲ୍ଲାର ଏକ ଦୀନହୀନ କର୍ମୀ ଉଜ୍ଜ୍ୱଳ ତାରକା ଖସି ପଡଲା । ଗରିବ ଚାଷୀ ମୂଲିଆଙ୍କ ବିପଦ ଆଗଦରେ ବନ୍ଧୁ ଚାଲିଗଲେ । କିନ୍ତୁ ସେ ଯେଉଁ ଆଦର୍ଶ ଓ ପରାକାଷ୍ଠା ଦେଖାଇ ଯାଇଛନ୍ତି ତାହା କେବେ ଲିଭିଯିବନି ।

---

## କମ୍ରେଡ୍ ନରସିଂହ ପାଢୀ

ବ୍ରହ୍ମପୁର ତାଲୁକା ବଡକୁଶସ୍ଥଳୀ ଗ୍ରାମରେ ଏକ କ୍ଷୁଦ୍ର ଚାଷୀ ପରିବାରରେ ଜନ୍ମ । ଗାଁରେ ପ୍ରାଥମିକ ଶିକ୍ଷା ଶେଷକରି ରେଙ୍ଗୁନ ଯାତ୍ରା କଲେ ୧୯୩୬ ସାଲରେ । ସେଠାରେ ତାଙ୍କ ବାପାଙ୍କ ସହ ମଜଦୁର କାମ କରିବା ସହ ଶିକ୍ଷା ଅଧ୍ୟୟନ କଲେ । ଦ୍ୱିତୀୟ ମହାସମର ଆରମ୍ଭ ବେଳେ ସେ ଗାଁକୁ ଫେରି ଆସିଲେ । ସ୍ୱାଧୀନତା ସଂଗ୍ରାମୀ ଦାମୋଦର ସାହୁଙ୍କ ପ୍ରୋତ୍ସାହନରେ ସେ ଭଗ୍ର ହାଏର୍ ଏଲିମେଣ୍ଟରୀ ସ୍କୁଲରେ ପୁନଃ ପ୍ରବେଶ କଲେ ଏବଂ ପରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ୧୯୩୯, ୧୯୪୨ ରେ ଗାନ୍ଧିଜୀଙ୍କ ଆହ୍ୱାନରେ ବ୍ୟକ୍ତିଗତ ସତ୍ୟାଗ୍ରହ, ଭାରତଛାଡ ଆନ୍ଦୋଳନ ପ୍ରଭୃତି ସଂଗ୍ରାମରେ ଝାସ ଦେଇ ଦୀର୍ଘଦିନ କାରବରଣ କରିଥିଲେ । ସେ ୧୯୪୩ ସାଲରେ ଜେଲରେ ଥିବା ବେଳେ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଉମାଚରଣ ପଟ୍ଟନାୟକ ପ୍ରଭୃତିଙ୍କ ନିର୍ଦ୍ଦେଶରେ ବ୍ରିଟିଶ ସରକାର ବିରୁଦ୍ଧରେ ସଂଗ୍ରାମ କରିବାକୁ ଜେଲ୍ ପାଚେରୀ ଡେଇଁ ପଦାକୁ ଆସି ଯାଇଥିଲେ । ପୁଣି ପୋଲିସ୍ ଦ୍ୱାରା ଧରା ହୋଇ ଜେଲ ଗଲେ ଏବଂ ଜେଲରେ ସାଥୀ ମୋହନ ଦାସ, ସାଥୀ ହରିହର ଦାଶ, ସାଥୀ ରାମକୃଷ୍ଣ ପତି, ସାଥୀ ବିଜୟ ଚନ୍ଦ୍ର ଦାସ ସମ୍ପର୍କରେ ଆସି କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ଏବଂ ମାର୍କ୍ସବାଦୀ ଦର୍ଶନ ଅଧ୍ୟୟନ କଲେ । ୧୯୪୫ ରେ ଜେଲରୁ ଖଲାସ ହୋଇ କୃଷକ ଆନ୍ଦୋଳନରେ ଯୋଗଦେଲେ । ନିଜର ସମ୍ପତ୍ତି ବିକି ମାର୍କସ୍‌ବାଦୀ ଦର୍ଶନ ପ୍ରଚାର ଲାଗି ବହିଧରି ବ୍ରହ୍ମପୁର କଲେଜ, ହାଇସ୍କୁଲ୍ ଓ ବିଭିନ୍ନ ବୁଦ୍ଧିଜୀବୀଙ୍କୁ ଆକୃଷ୍ଟ କରୁଥିଲେ । ସେ ଜଣେ ବାସ୍ତବବାଦୀ, ନିଡର, ପରିଶ୍ରମୀ, ନିଷ୍ଠାବାନ ସାଥୀ ଥିଲେ । ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ଗଠନ ଓ କୃଷକ ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସେ ଜିଲ୍ଲା ପରିଷଦ ଓ ଜିଲ୍ଲା କାର୍ଯ୍ୟକାରୀ କମିଟି ସଭ୍ୟ ଥିଲେ । ୧୯୮୩ ରେ ତାଙ୍କର ବିୟୋଗ ଘଟିଥିଲା ।

---

## ସାଥୀ ଆଇ. ସନ୍ନ୍ୟାସୀ

[illegible] ଜାନୁୟାରୀ ୧୯୨୦ ସାଲରେ ଆସିକା ଟାଉନ୍‌ର ଏକ ଗରିବ ଭଣ୍ଡାରୀ ପରିବାରରେ ଜନ୍ମ । ଶେରଗଡ, ଆସିକା [illegible] ଅଞ୍ଚଳରେ ରହିଥିବା ଜମିଦାର, ମୁସ୍ତାଦାର ବିରୋଧି ଆନ୍ଦୋଳନର ନେତୃତ୍ୱ ନେଇଥିବା ସାଥୀ ଗୋବିନ୍ଦ ପ୍ରଧାନ, [illegible] ସମ୍ପର୍କରେ ଆସି ୧୯୪୭ ସାଲରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ । ସେ ନିଜ ବୃତ୍ତି କରି ପରିବାରକୁ [illegible] କମ୍ୟୁନିଷ୍ଟ ପାର୍ଟିର ସମସ୍ତ ଜନ ଆନ୍ଦୋଳନରେ ଲୋକଙ୍କୁ ସଂଗଠିତ କରାଇ ନେତୃତ୍ୱ ନେଉଥିଲେ । ଆସିକା [illegible] ଓ ଜିଲ୍ଲା ପରିଷଦର ସଭ୍ୟ ଭବେ ରହିଥିଲେ । ୧୯୯୩ ରେ ତାଙ୍କର ମୃତ୍ୟୁ ହୋଇଥିଲା ।

Digitized by srujanika@gmail.com

# କମ୍ରେଡ଼୍ ରବୀନ୍ଦ୍ରନାଥ ପଲେଇ



କମ୍ରେଡ୍ ରବୀନ୍ଦ୍ର ନାଥ ପଲେଇଙ୍କ ଜନ୍ମ ୧୯୫୩ ରେ ଖଲିକୋଟ ନିକଟସ୍ଥ ଡେନ୍ତୁଳିଆ ଟଳ୍ଲୀ ଗ୍ରାମରେ । ଗାଁ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷା ପରେ ଖଲିକୋଟ ହାଇସ୍କୁଲରେ ଛାତ୍ର । ଖଲିକୋଟ ହାଇସ୍କୁଲର ୬୭/୬୮ ଅଗ୍ନିର ବାତାବରଣ ଛାତ୍ର ମାନଙ୍କୁ ସଂଘବଦ୍ଧ ହେବାପାଇଁ ବାଧ୍ୟ କରୁଥିଲା । ବିଶ୍ୱବିଦ୍ୟାଳୟ ଆନ୍ଦୋଳନ ଜିଲ୍ଲାର ଅନ୍ଦି କନ୍ଦି ଭିତରେ ପ୍ରବେଶ କରିଥିଲା । ସ୍ଥାନୀୟ କଲେଜରେ ଛାତ୍ର ଆନ୍ଦୋଳନ ତଥା ରାଜନୈତିକ ଆନ୍ଦୋଳନ, ଅନେକ ସ୍କୁଲ କଲେଜ ପିଲାଙ୍କୁ ଆକୃଷ୍ଟ କରାଉଥିଲା । ଖଲିକୋଟ ହାଇସ୍କୁଲର ଶ୍ରେଷ୍ଠ ଅଥଚ ବାଗ୍ମୀ ଛାତ୍ର ରବୀନ୍ଦ୍ରନାଥ ପଲେଇ ଏଥିରୁ ବା ବାଦ ପଡ଼ନ୍ତେ କପରି ? ଶ୍ରେଣୀ ବର୍ଜ୍ଜ କେତୋଟି ଆନ୍ଦୋଳନର ପୁରୋଭାଗରେ ରହି ଲାଠିମାଡ଼ ଖାଇ ଏ କିଶୋର ନେତା ଛାତ୍ର ଅବସ୍ଥାରୁ ନିଜର ନେତୃତ୍ୱ ଦାନଶକ୍ତି, ଧୈର୍ଯ୍ୟ, ଅଟଳତା ଦେଖାଇ ଆସିଛନ୍ତି । ଗୋସାଇଁ ବାପା-ମଣ୍ଡଳ କାହ୍ନୀ । ବାପା ପଞ୍ଚାୟତ ସରପଞ୍ଚ, ଉଚ୍ଚଶିକ୍ଷିତ । ଅଚଳାଚଳରୁ ଚଳାଚଳ ଅବସ୍ଥାକୁ ପରିବାର ଖସି ଆସୁଛି । ବଡ଼ ପୁଅ ଘରୁ ମୁଠା ମୁଠା ପଇସା ଖର୍ଚ୍ଚ କରି ପୁଅକୁ ହୋଷ୍ଟେଲରେ ରଖାଯାଇଛି । କଡ଼ା ଜମିଆଳୀ ପୁଅ ପାଠ ପଢ଼ି ଘର ଚଳାଉ ସମ୍ପତ୍ତି ଜଗୁ - ସମ୍ପତ୍ତି ବଢ଼ାଉ । କିନ୍ତୁ ପ୍ରକୃତିର ଆଇନ ସିଦ୍ଧ ପରିବର୍ତ୍ତନ ପାଇଁ ସିଏ ବାଟ ସଫା କରିବା ପାଇଁ ତିଆର । ସାଥୀ ରବି ତାର ବିପରୀତ କରନ୍ତା କପରି ? ପାଠପଢ଼ା ସାଙ୍ଗକୁ ସଭା ସମିତିରେ ଯୋଗଦେଇ, ସ୍କୁଲ ଭିତରେ ବାହାରେ ଅନ୍ୟାୟର ପ୍ରତିବାଦ କରି କିଶୋର ଅବସ୍ଥାରୁ ହିଁ ନେତା ବନିଲେ ! ଜୀବନର ଏହି ପ୍ରାକ୍ କାଳରେ ଗଣକବି ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ( ତତ୍‌କାଳୀନ ଶିକ୍ଷକ ) ଙ୍କର ଚରମାଚରମି କବିତା ଅଉ ସୋସାଲିଷ୍ଟ ପାର୍ଟିର ସାମନ୍ତବାଦ ପାର୍ଟିର ସାମନ୍ତବାଦୀ ବିରୋଧ ଭାଷଣରେ ସେ ପ୍ରଭାବିତ ହୋଇଥିବା ଅନେକ ଥର ହୋଷ୍ଟେଲ ଛାତ୍ରମାନଙ୍କ ମଧ୍ୟରେ ଖଣ୍ଡଣ ଅପନ୍ତୋଷ ।

ପୁଅ ନେତା ବନିଗଲା । ପାଠ ଚୁଲିକି ଯିବ । ତେଣୁ ବାପା ଯୋଜନା କଲେ ପାରଳା ବାହାରେ ପାଠ ପଢ଼ାଇବେ । କିନ୍ତୁ ଶେଷରେ ଏସ୍. ଭି. ଏମ୍. କଲେଜ, ଜଗତସିଂହପୁର ଏବଂ ରେଭେନ୍‌ସାରେ ଛାତ୍ର ହେଲେ । କିଶୋର ନେତା ରବୀନ୍ଦ୍ରନାଥ । କଲକାଟି ଉପଯୁକ୍ତ ପରିବେଶରେ ପାଖୁଡ଼ା ମେଲିଲା । ୭୯ ଠାରୁ ଛାତ୍ର ଆନ୍ଦୋଳନ ସହ ସଂପୃକ୍ତ ହୋଇ ରାଜ୍ୟର ଛାତ୍ରନେତା ବନିଗଲେ । ଅଖିଳ ଭାରତ ଛାତ୍ର ସଂଘ ଏକ ଟାଣୁଆ ଲଢ଼ୁଆ ସାଥୀ ପାଇଲା । କଟକ ସହରର କାନ୍ଥ ବାଡ଼ରେ ରବୀନ୍ଦ୍ରନାଥଙ୍କ ଅଂକାବଙ୍କା ଅକ୍ଷର ଦିଶିଲା । ସହର ଗଳି ସଭାରେ ତାଙ୍କର ବକ୍ତୃତା ଶୁଭିଲା । ପରିଶେଷରେ କମ୍ୟୁନିଷ୍ଟ ପାର୍ଟିର କଟକ ସିଟି ଶାଖାର ସଭ୍ୟ ବନିଗଲେ ୧୯୭୯ ମସିହାରେ ।

ଖଲିକୋଟ ଅଞ୍ଚଳରେ ପାର୍ଟିର ଗୋଟିଏ ଶାଖା —ସାବୁଳିଆ । ସାଥୀ କାଳଚରଣ ପଣ୍ଡା ଜିଲ୍ଲା ପରିଷଦର ସହ ସମ୍ପାଦକ । ଛାତ୍ର ଆନ୍ଦୋଳନ ଭିତରୁ ଆସନ୍ତି ସାଥୀ ସଦାନନ୍ଦ ପଟ୍ଟନାୟକ । ୨।୩ଟି ଶାଖା ଗଢ଼ିଉଠେ । ୭୯ ମସିହା ସୁଦ୍ଧା ପାର୍ଟିର ୨୪।୨୫ ଖଣ୍ଡ ଗାଁ ସହ ସମ୍ପର୍କ ବଢ଼ିଯାଏ । ୨୧ଟି ଶାଖା ନେଇ ୭୫ ମସିହାରୁ ଖଲିକୋଟ କୋଦଳା ଅଞ୍ଚଳ ଗଠିତ ହୋଇଥାଏ । ଅଞ୍ଚଳ ନେତୃତ୍ୱର ସାମୟିକ ନିଷ୍କ୍ରିୟତା ଫଳରେ ସାଥୀ କାଳଚରଣ ପଣ୍ଡା, ରବି ବାବୁଙ୍କୁ ନେତୃତ୍ୱ ପାଇଁ ଅନୁରୋଧ କରନ୍ତି । ସାଥୀ ରବୀନ୍ଦ୍ରନାଥଙ୍କ ପ୍ରବେଶ ପରେ ପାର୍ଟି ନୂତନ ମୋଡ଼ ନିଏ । ସଂଗଠନ ସାଙ୍ଗକୁ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଗ୍ରହଣ କରେ । ଗାଁ ସହ ସମ୍ପର୍କ ଦଳ ସମ୍ପର୍କରେ ପରିଣତ ହୁଏ । ୮୦ ମସିହାରେ ପାର୍ଟି ପୂର୍ବରୁ କେବଳ ମୁହଁ ସମ୍ପର୍କ ରଖିଥିବା ଆଦିବାସୀ ଅଞ୍ଚଳରେ ପ୍ରକୃତ ନେତା ବନିଯାଏ । ୨୫।୩୦ ଖଣ୍ଡ ଛୋଟ ଛୋଟ ଗାଁ ନେଇ ଦେବୀଝର ଅଞ୍ଚଳ (ବର୍ତ୍ତମାନ ବାଦପଲ୍ଲୀ ପଞ୍ଚାୟତ) ଆଇତପୁର ପଞ୍ଚାୟତ ଅଧୀନରେ । କାହିଁ କେତେ କାଳରୁ ସେମାନଙ୍କ ପୂର୍ବ ପୁରୁଷ ପାରଳା ଠାରୁ ଆସି ଘର ବାନ୍ଧିଛନ୍ତି । ଜମି ସଫାକରି ଫସଲ କରାଉଛନ୍ତି । କାଳକ୍ରମେ ଆମ: ପାଖର କେତେକ ଧୂର୍ତ୍ତ ପରିବାର "ଧୃତରାଷ୍ଟ୍ର ଆଲିଙ୍ଗନ ମଧ୍ୟରେ ନିଜ ଘର ଛାଡ଼ି, କେତେକ ଆଦିବାସୀ ଅନ୍ୟ ସମସ୍ତ ଭୂ-ସମ୍ପତ୍ତି ହରାଇଛନ୍ତି । ବନ୍ଧକ ନଟେରେ ବନ୍ଦି । ବନ୍ଧକ ଜମିର ଋଣ ପରିଶୋଧ କେବେହେଁ ହୋଇ ପାରେନା, ସୁଧ ମୂଳ ଠାରୁ ୫୦।୬୦ ଗୁଣ ହେଲେ ମଧ୍ୟ ପରିଶୋଧ ହେଲା କପରି, ମୂଳଧନ ପରି ସାଉକାର ସଙ୍ଗାତେ ଫେରି ପାଇନାହାନ୍ତି । ସାଉକାର ସଙ୍ଗାତ ଘରକୁ କୁକୁଡ଼ାଠାରୁ ଆରମ୍ଭ କରି ଆଳୁ ପର୍ଯ୍ୟନ୍ତ ଯିବ । କିନ୍ତୁ ସାଉକାର

Digitized by srujanika@gmail.com

ସଙ୍ଗାତ ଘରୁ କେବଳ ବେଳ ଅବେଳରେ ଋଣ ଆସିବ । ପାର୍ଟି ତରଫରୁ ତାଲିକା ସଂଗ୍ରହ ହେଲା ! ଆଞ୍ଚଳିକ ସମ୍ପାଦକ ସାଥୀ ରବିନ୍ଦ୍ର ନିଜେ ଓକିଲ । ଆଇନର ଆଶ୍ରୟ ନିଆଗଲା । ଜିତା ମଧ୍ୟ ହେଲା । ତଥାପି ସଂଗଠିତ ଭାବେ ସାହୁକାରମାନଙ୍କ ତରଫରୁ ଜମି ଉପରେ ବଳ ପ୍ରୟୋଗ କରାଗଲା । ପାର୍ଟିର ନେତୃତ୍ୱରେ ଶହ ଶହ ଆଦିବାସୀ ନାଲି ପତାକା ପୋତି ଜମି ଦଖଲ କଲେ । ସାହାସ ଆସିଲା । ପାର୍ଟିର ସ୍ଥାୟୀ ଅନୁଭୂତି ମଧ୍ୟ ହେଲା । ସମଗ୍ର ଅଞ୍ଚଳ ଏକତ୍ରିତ ହେଲା । ତିନୋଟି ଶାଖା, ୪୦।୫୦ ସଭ୍ୟ କିନ୍ତୁ ପାର୍ଟିର ଡାକରାରେ ଘେରପିଗ୍ରୁ ଜଣେ ଦି'ଜଣ ହାଜର । ଦେବୀ ଝରରେ ବିଜୟ ହେଲା, କେତେକ ସ୍ଥାନରେ ସାହୁକାର ବିନା ପ୍ରତିରୋଧରେ ଗୁଡ଼ିଲେ । କିନ୍ତୁ ଗୁଣ୍ଡୁରିପଲ୍ଲୀ ଠାରେ କେବଳ ଯେ ପ୍ରତିରୋଧ ହେଲା ତାହା ନୁହେଁ ନରହତ୍ୟା ମକଦ୍ଦମାରେ ସାଥୀମାନଙ୍କୁ ଜଡ଼ିତ କରାଇ ଦିଆଗଲା । ଯୋଜନା ଥିଲା ସାଥୀ ରବିଙ୍କୁ ଜଡ଼ିତ କରାଇଦେବା । କିନ୍ତୁ ସାଥୀ ରବିଙ୍କ ବଳିଷ୍ଠ ନେତୃତ୍ୱ ଆଦିବାସୀ ସାଥୀମାନଙ୍କୁ ବିଜୟୀ କଲା । ପାଖେ ପାଖେ ରହିଲେ ସାଥୀ ଲକ୍ଷ୍ମଣ ମହାପାତ୍ର ଓ ଇନ୍ଦ୍ରଶୁ ଆଗୁଆ । ଗୁଣ ଚନ୍ଦ୍ର ଗୁଣିଆ । ପାର୍ଟିର ଦୃଢ଼ ଭିତ୍ତିଭୂମି ସ୍ଥାପିତ ହେଲା ।

ସାଥୀ ରବିନ୍ଦ୍ର ନାଥଙ୍କ ବ୍ୟକ୍ତିତ୍ୱର ବିକାଶ ଘଟିଲା । ୮୦ ରୁ ୮୬ ମାତ୍ର ୬ ବର୍ଷ । ସାଧାରଣ ଜୀବନରେ ଏକ ସ୍ୱଳ୍ପକାଳ । ମାତ୍ର ଜଣେ ସଂଗଠକ, ସଚେତନ ସମାଜ ବିଜ୍ଞାନୀ ନିମନ୍ତେ ଏହା ଯଥେଷ୍ଟ । ଏ ଭିତରେ ସାଥୀ ରବିନ୍ଦ୍ରନାଥ ପଲେଇ ସର୍ବ-ସାଧାରଣରେ ରବି ପଲେଇ ହୋଇଗଲେ । ସାମୟିକ ଓକିଲାତି ନିମନ୍ତେ ବାଛିଥିବା ସ୍ଥାନ ଛତ୍ରପୁର ଗୁଡ଼ିଲେ । ପାର୍ଟିର ସଦାବେଳିଆ କର୍ମୀ ବନିଗଲେ । ଅଧିକାଂଶ ପାର୍ଟି ଶାଖା ସକ୍ରିୟ ହୋଇ ଉଠିଲା । ଆଞ୍ଚଳିକ ସମସ୍ୟାମାନ ନେଇ ଆନ୍ଦୋଳନ ସଙ୍ଗଠିତ ହେଲା । ସ୍ୱତନ୍ତ୍ର ବାଦପଲ୍ଲୀ ପଞ୍ଚାୟତ ଗଠିତ ହେଲା । ବିଭିନ୍ନ ଜଳସେଚନ ଯୋଜନାର ମରାମତି, କେନାଲ ସଂପ୍ରସାରଣ, ସ୍କୁଲ ତିଆରି ପାଇଁ ସରକାର ବାଧ୍ୟ ହେଲେ । ଅଞ୍ଚଳର ଜନମାନସରେ ପାର୍ଟି ଏକ ପ୍ରତିଷ୍ଠିତ ରାଜନୈତିକ ଦଳ ଭାବେ ସ୍ୱୀକୃତି ଲାଭ କଲା । ସାଥୀ ରବି ପଲେଇ ଅଖିଳ ଭାରତ ଯୁବ ସଂଘର ଜିଲ୍ଲା ପରିଷଦ ଉପ-ସଭାପତି, ପାର୍ଟିର ଜିଲ୍ଲା ପରିଷଦ, କାର୍ଯ୍ୟକାରୀ କମିଟି ସଦସ୍ୟ ତଥା ରାଜ୍ୟ ପରିଷଦ ସଭ୍ୟ । କାର୍ଯ୍ୟକ୍ଷେତ୍ର ଥିଲା ନିଜ ଅଞ୍ଚଳ । ଏପରି ଏକ ଦିନ ନାହିଁ ଯେଉଁଦିନ ତାଙ୍କର ପାର୍ଟି ସାଥୀମାନଙ୍କ ସହ ଦଳର କାର୍ଯ୍ୟରେ ନ ବଡ଼ିଛି ।

ସମାଜବାଦୀ ରାଷ୍ଟ୍ର ଋଷିଆ ପରିଦର୍ଶନରୁ ଫେରି ଅକ୍ଟୋବର ସାରା ଶାଖା ସମ୍ମିଳନୀ, ନଭେମ୍ବର ଯୋନାଲ ସମ୍ମିଳନୀ ଖୁବ୍ ଖଟଣି । ୮୫ ନଭେମ୍ବର ୨୮ ଖଲିକୋଟ ସଭା ସାରି ଗାଁକୁ ଫେରି ଅସୁସ୍ଥ ହୋଇ ପଡ଼ିଲେ । ବ୍ରହ୍ମପୁର ମେଡ଼ିକାଲରେ ଭର୍ତ୍ତି ହେଲେ । ଗୋଡ଼ ଫୁଲିଛି, ଆଖି ଫୁଲିଛି । ଔଷଧ ଖର୍ଚ୍ଚ ପର୍ଯ୍ୟାପ୍ତ । ଅକ୍ଳାନ୍ତ ପରିଶ୍ରମ କଲେ ଡାକ୍ତର । ବିଜ୍ଞାନ ହାର ମାନିଲା । ଆଖିଟିଏ ହରାଇଲେ । ତଥାପି ଧୈର୍ଯ୍ୟ । ଗୋଟିଏ ଆଖିରେ ଦେଖି ହେବ । ଲେଖି ହେବ । ମୁଣ୍ଡ ଅଚଳ ନହେଲେ ହେଲା । ପାଦ, ହାତ ଗୁଲୁଥିଲେ ହେଲା । ଦାନ୍ତ ଖସିଲା । ତଥାପି ଅସୀମ ମାନସିକ ଶକ୍ତି । ଡାକ୍ତରଙ୍କ ମତ ଦିଲ୍ଲୀ ଯିବା ଉଚିତ । ସାଥୀ ରମେଶ ପାଢ଼ୀ, ସାଥୀ ରବିଙ୍କୁ ଧରି ଦିଲ୍ଲୀ ଗଲେ । ଏ:ଆଇ:ଆଇ: ଏମ୍: ଏସ୍‌ରେ ଭର୍ତ୍ତି କଲେ । କିନ୍ତୁ କେହି ବଞ୍ଚାଇ ପାରିଲେ ନାହିଁ । ୧୯-୧-୮୬ ରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ । ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ଏକ ଉଜ୍ଜ୍ୱଳ ତାରକା ଖସିଗଲା ।



Digitized by srujanika@gmail.com



# ସାଥୀ ଅନ୍ତର୍ଯାମୀ ମହାନ୍ତ

ଅନ୍ତର୍ଯାମୀ ମହାନ୍ତ କେବଳ ଜଣେ ପ୍ରବୀଣ ଶିକ୍ଷକ, ଶିକ୍ଷାବିତ୍, ଶିକ୍ଷା ସଂଗଠକ, ସାହିତ୍ୟିକ ନ ଥିଲେ, ସେ କମ୍ୟୁନିଷ୍ଟ ପାର୍ଟିର ଜଣେ ଶୃଙ୍ଖଳିତ ସୈନିକ, କୃଷକ ବନ୍ଧୁ, ସର୍ବୋପରି ଲୋକ ସେବକ ଥିଲେ । ସେ ତାଙ୍କର ଭାଇ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ସଦାନନ୍ଦ ମହାନ୍ତଙ୍କ ପୂର୍ବରୁ କମ୍ୟୁନିଷ୍ଟ ଚିନ୍ତାଧାରାର ବଶବର୍ତ୍ତୀ ଥିଲେ । ତେଣୁ ନିଜ ଗାଁ ଆଲପୁର **Aided Elementary School** ଶିକ୍ଷକତାରୁ ତାଙ୍କୁ ବିଦାୟ ନେବାକୁ ପଡ଼ିଥିଲା । ଦେଶରୁ ବ୍ରିଟିଶ ସାମ୍ରାଜ୍ୟର ବିଲୋପ ଏବଂ ସାମ୍ୟବାଦ ପ୍ରତିଷ୍ଠା ଲକ୍ଷ୍ୟ ନେଇ ସଂକଳ୍ପବଦ୍ଧ ଭାବେ ସେ ସଂଗ୍ରାମ ପଥରେ ଅଗ୍ରସର ହୋଇଥିଲେ । ଏଥିପାଇଁ ସେ ବହୁ ବର୍ଷ ଗୁପ୍ତବାସରେ ରହି ଅନ୍ଧକାର ରାତିରେ ଗାଁରୁ ଗାଁକୁ ବୁଲି ଜନ ସଂଗଠନ ଗଢ଼ି ତୋଳିଥିଲେ । ବ୍ୟାପକ ଅଞ୍ଚଳର ଶୁଖିଲା ଜମିକୁ ଜଳ ଯୋଗାଣ ନିମନ୍ତେ ହାରଧା'ର କେନାଲ ନିର୍ମାଣ ଆନ୍ଦୋଳନର ନେତୃତ୍ୱ ନେଇ ବ୍ରହ୍ମପୁରର ପାହାଡ ପାଦ ଦେଶରେ ଏକ ସଭାରୀ ସମାବେଶରେ ଉଦ୍‌ବୋଧନ ଦେଉଥିଲା ବେଳେ ଗିରଫ ହୋଇ କାରାବରଣ କରିଥିଲେ । ୧୯୪୯ ଶେଷ ଭାଗରୁ ଦକ୍ଷିଣାଞ୍ଚଳ ତଥା ୧୯୫୨ରେ ବିଧିବଦ୍ଧ ଭାବେ ଜିଲ୍ଲା ସମ୍ପାଦକ ନିର୍ବାଚିତ ହେଲା ଯାଏଁ, ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସେ ସମ୍ପାଦକ ଥିଲେ । ୧୯୫୨ ବିଧାନସଭା ନିର୍ବାଚନରେ ତାଙ୍କର ସାନ ଭାଇ ସଦାନନ୍ଦ ମହାନ୍ତ ପଟ୍ଟଣାସୀ ନିର୍ବାଚନ ମଣ୍ଡଳୀ ପୁରୁଷୋତ୍ତମପୁରରୁ ପ୍ରାର୍ଥୀ ହୋଇଥିଲେ ମଧ୍ୟ କମ୍ୟୁନିଷ୍ଟ ପାର୍ଟିର ନିଷ୍ପତ୍ତିକୁ ଅବଜ୍ଞା ନକରି ସେ ହିଞ୍ଜିଳି ନିର୍ବାଚନ ମଣ୍ଡଳୀର ଏକ ଅଞ୍ଚଳରେ ଗୋବିନ୍ଦ ପ୍ରଧାନଙ୍କ ପାଇଁ ନିର୍ବାଚନ ପ୍ରଚାର ଅଭିଯାନର ନେତୃତ୍ୱ ନେଇଥିଲେ । ଗୋବିନ୍ଦ ବାବୁ ଓ କମ୍ୟୁନିଷ୍ଟ ପାର୍ଟି ପାଇଁ ସେ ପ୍ରାଣମୂର୍ଚ୍ଛା ଲଢ଼ିଥିଲେ । ସେତେବେଳେ ସେ ଘୋର ଆର୍ଥିକ ଅନାଟନର ସମ୍ମୁଖୀନ ହୋଇଥିଲେ । ଘରେ ଖାଇବାକୁ ନାହିଁ । ବଡ ପୁଅ ଚିତ୍ତକୁ ପାଠ ପଢ଼ାଇବା ପାଇଁ ସମ୍ବଳର ଏକାନ୍ତ ଅଭାବ । ମଝିଆ ପୁଅ ବିପିନ ତଳେ ଜନ୍ମିତା ଝିଅଟି ରୋଗ ଯନ୍ତ୍ରଣାରେ ଛଟପଟ ହେଉଥିଲେ ମଧ୍ୟ ଟିକିଏ ଔଷଧ କିଣିବା ପାଇଁ ପଇସା ନାହିଁ । ତାଙ୍କ ଆଖି ଆଗରେ ଝିଅର ପ୍ରାଣବାୟୁ ଉଡ଼ିଗଲା । ସେହିଠାରୁ ତାଙ୍କର ମନରେ ପରିବର୍ତ୍ତନ ଘଟିଲା । ୧୯୫୪ ମସିହା ବେଳକୁ ପୁଣି ସେ ଶିକ୍ଷକତାକୁ ଫେରିଲେ । କବିସୂର୍ଯ୍ୟ ନଗର ନିକଟବର୍ତ୍ତୀ ଇନାମ ଡେଙ୍ଗାପଦରରେ ମାଷ୍ଟ୍ର ହେଲେ । ଉକ୍ତ ଗ୍ରାମକୁ ସେ ପ୍ରାଣଭରି ଭଲ ପାଇଲେ । ନିଜର କରି ନେଲେ । ତାଙ୍କର ସାଙ୍ଗଠନିକ ଶକ୍ତି ଶିକ୍ଷାଆଡକୁ ବିଚ୍ଛୁରିତ ହେଲା । ପରେ ବିଭାଗୀୟ କର୍ତ୍ତୃପକ୍ଷ ତାଙ୍କୁ କବିସୂର୍ଯ୍ୟନଗର ବଦଳି କରି ଆଣିଲେ । ବୃତ୍ତିରୁ ବିଦାୟ ନେବା ପର୍ଯ୍ୟନ୍ତ ସେ କବିସୂର୍ଯ୍ୟନଗରରେ ରହିଲେ ଏବଂ ସେଠାରେ ନିଜର ଘର କଲେ । ସେ ମହାନ୍ତ ମାଷ୍ଟ୍ର ନାମରେ ସହରାଞ୍ଚଳ ଏବଂ ଗ୍ରାମାଞ୍ଚଳରେ ସୁପରିଚିତ ଥିଲେ । ତାଙ୍କର ଉଦ୍ୟମ ଓ ପ୍ରେରଣାରେ ସେ ଅଞ୍ଚଳରେ ବହୁ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଛି । ସେ ଜଣେ ସୁବକ୍ତା, ସାହିତ୍ୟିକ ତଥା କବି ଭାବେ ପ୍ରତିଷ୍ଠା ଲାଭ କରିଥିଲେ । ତାଙ୍କ ରଚିତ ରଘୁନାଥ ଭାଇ, ଏଇ ଆଠଗଡ, ପିଲାଙ୍କ ଗୀତିକା, ଧନମାଳୀ, ମହାମାୟୀ, ଜଣାଣ ପାଠକ ମହଲରେ ଉଚ୍ଚ ପ୍ରଶଂସିତ ।

ଅନ୍ତର୍ଯାମୀ ବାବୁଙ୍କ ଉପରେ ଭରସା ରଖି ୧୯୬୭ ରେ କବିସୂର୍ଯ୍ୟନଗର ନିର୍ବାଚନ ମଣ୍ଡଳୀରେ ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁଙ୍କୁ ପ୍ରାର୍ଥୀ କରାଯାଇଥିଲା । ଦିନ ରାତି ଖିଆପିଆ ଭୁଲି ସେ ସର୍ଦ୍ଦାରଙ୍କ ପାଇଁ ଶିକ୍ଷକତାରେ ଥାଇ ମଧ୍ୟ ନିର୍ଭୀକ ଭାବେ ପ୍ରଚାର ଚଳାଇଥିଲେ ଏବଂ ସର୍ଦ୍ଦାର ଜିଣିଲେ । ସର୍ଦ୍ଦାରଙ୍କ ପରେ ସଦାନନ୍ଦ ମହାନ୍ତ ସେଠାରୁ ଦୁଇଥର ପ୍ରାର୍ଥୀ ହୋଇ ଜୟଯୁକ୍ତ ହୋଇଥିଲେ । ସେତେବେଳେ ମଧ୍ୟ ସେ ଦକ୍ଷ ପ୍ରଚାରକ ଥିଲେ । ଲୋକେ କହୁଥିଲେ ମହାନ୍ତ ମାଷ୍ଟ୍ରଙ୍କ ସାନ ଭାଇ ପ୍ରାର୍ଥୀ ହୋଇଛନ୍ତି ।

ଚାକିରୀରୁ ଅବସର ନେବା ପରେ ଦଳୀୟ ସଙ୍ଗଠନ ପାଇଁ ପୂର୍ଣ୍ଣ ସମୟ ଦେବାକୁ ପ୍ରସ୍ତୁତ ହେଉଥିବା ବେଳେ ସେ ଅସୁସ୍ଥ ହୋଇ ପଡ଼ିଲେ ଏବଂ ତା ୯ । ୫ । ୧୯୮୯ ରେ ତାଙ୍କର ସଂଗ୍ରାମମୟ ଜୀବନର ଅବସାନ ଘଟିଲା ।

Digitized by srujanika@gmail.com

# କମ୍ରେଡ୍ କୃଷ୍ଣ ପାତ୍ର

ଶେରଗଡ଼ ଅଞ୍ଚଳର ବହୁ ପୁରାତନ କମ୍ୟୁନିଷ୍ଟ ନେତା ସାଥୀ କୃଷ୍ଣ ପାତ୍ର, ୧୯୪୫-୪୬ ମସିହାରେ କମ୍ୟୁନିଷ୍ଟ ଆନ୍ଦୋଳନରେ ଝାସ ଦେଇ ଶେଷ ଜୀବନ ପର୍ଯ୍ୟନ୍ତ ପାର୍ଟିର ମତ ଓ ଆଦର୍ଶରେ ଅଟଳ ଥିଲେ। ୧୯୪୯-୫୦ ମସିହାରେ ପାର୍ଟି ବେଆଇନ ଘୋଷଣା ହେବା ପରେ ଅଜ୍ଞାତ ବାସରେ ଥାଇ ପାର୍ଟିର ବିଭିନ୍ନ କାର୍ଯ୍ୟକଳାପରେ ଅଂଶଗ୍ରହଣ କରି ଜନସାଧାରଣଙ୍କ ମଧ୍ୟରେ କାମ କରୁଥିଲେ ଓ ସମସ୍ତଙ୍କ ନିକଟରେ ଖୁବ୍ ଆଦରଣୀୟ ଥିଲେ। ୭ ଜୁଲାଇ ୧୯୯୦ରେ ତାଙ୍କର ବିୟୋଗ ହୋଇଯାଇଛି।

---

# କମ୍ରେଡ୍ ମଧୁସୂଦନ ମୁଦ୍ରା

ସାଥୀ ମଧୁସୂଦନ ମୁଦ୍ରା ୧୯୭୫ ମସିହାରୁ ଲଗାତର ଭାବେ ଖଲକୋଟ, କୋଦଳା ଜୋନ୍ ଅନ୍ତର୍ଗତ ଷାଙ୍କୁଡ଼ା ଶାଖାର ସଂପାଦକ ଭାବେ କାର୍ଯ୍ୟ ତୁଲାଇ ଆସୁଥିଲେ। ନୂଆ ଦୁନିଆର ଶତମତ ଗ୍ରାହକ ଏବଂ କେତେକ ସମୟ ପାଇଁ ଏଜେଣ୍ଟ ମଧ୍ୟ ଥିଲେ। ସେ ସବୁ ସାଥୀ ଓ ସମର୍ଥକଙ୍କର ସୁପରିଚିତ, ମିଷ୍ଟଭାଷୀ, ଅତ୍ୟନ୍ତ ମେଳାପୀ କଷ୍ଟ ସହିଷ୍ଣୁ ଥିଲେ। କମ୍ୟୁନିଷ୍ଟ ଜୀବନକୁ ଆଦର୍ଶ ଜୀବନ ଭାବେ ସାଥୀ ମୁଦ୍ରା ଗ୍ରହଣ କରି ନେଇଥିଲେ। ଏମିତି ଆନ୍ଦୋଳନ ନାହିଁ ଯେଉଁଥିରେ ସାଥୀ ମୁଦ୍ରା ଯୋଗ ଦେଇନାହାନ୍ତି। ସେ ପାର୍ଟି ଡାକରାରେ ସବୁ ଆଇନ ଅମାନ୍ୟ ଆନ୍ଦୋଳନ କରି ଅନେକ ଥର କାରାବରଣ କରିଥିଲେ। ମୃତ୍ୟୁ ପର୍ଯ୍ୟନ୍ତ ସେ ଶାଙ୍କୁଡାସ୍ଥିତ ଧବଳେଶ୍ୱର ମଧ୍ୟ ଇଂରେଜୀ ବିଦ୍ୟାଳୟର ପରିଚାଳନା କମିଟିର ସମ୍ପାଦକ ଥିଲେ। ୯ ଅକ୍ଟୋବର ୧୯୯୦ ରେ ୭୧ ବର୍ଷ ବୟସରେ ତାଙ୍କର ବିୟୋଗ ହୋଇଥିଲା।

---

# କମ୍ରେଡ୍ ଉଜ୍ଜ୍ୱଳ ରାଉତ

ସାଥୀ ଉଜ୍ଜ୍ୱଳ ରାଉତ ଦୀର୍ଘ ୩୦ ବର୍ଷ କାଳ କମ୍ୟୁନିଷ୍ଟ ପାର୍ଟି ଓ କୃଷକ ସଭା ନେତୃତ୍ୱରେ ଜମିଦାର, ମୁସ୍ତାଦାର ଓ ସାହୁକାରମାନଙ୍କ ଅତ୍ୟାଚାର ବିରୁଦ୍ଧରେ ସାଲସ୍‌ହୀନ ସଂଗ୍ରାମର ଯୋଦ୍ଧା ଥିଲେ। ଖେମୁଣ୍ଡି ଅଞ୍ଚଳରେ ସେ ଥିଲେ ଘରେ ଘରେ ପରିଚିତ ଓ ସମ୍ମାନିତ। ଜମିଦାର ଓ ସାହୁକାରଙ୍କ ଅତ୍ୟାଚାର ଓ ଷଡ଼ଯନ୍ତ୍ର ଫଳରେ ଆଡ଼ାପଡ଼ା ପଞ୍ଚାୟତରେ ଆତଙ୍କ ସୃଷ୍ଟି ହୋଇଥିଲା ବେଳେ ସାଥୀ ଉଜ୍ଜ୍ୱଳ ରାଉତ ତାଙ୍କର ସାଂଗଠନିକ ଶକ୍ତି ଓ କୌଶଳ ବଳରେ ସେ ସବୁର ସାମ୍ନା କରିଥିଲେ। ତାଙ୍କୁ ଏଥିପାଇଁ ୧୫।୨୦ଟି ମିଥ୍ୟା ମକଦ୍ଦମାରେ ସମ୍ପୃକ୍ତ କରାଯାଇଥିଲା ଏବଂ ତନ୍ମଧ୍ୟରୁ ଅଧିକାଂଶ ହାଇକୋର୍ଟ ପର୍ଯ୍ୟନ୍ତ ଯାଇଥିଲା। କଟକରେ ରାଜ୍ୟ ପାର୍ଟି ଅଫିସ ଥିଲା ବେଳେ ଅଧିକାଂଶ ସମୟରେ ଦେଖିଛେ ସାଥୀ ଉଜ୍ଜ୍ୱଳ ରାଉତ କେସ୍ ପାଇଁ ଆସି ସପ୍ ଖଣ୍ଡିଏ ପକାଇ ଶୋଇଛନ୍ତି। ଏହା ଫଳରେ ତାଙ୍କ ଆର୍ଥିକ ଅବସ୍ଥା ଦୋହଲି ଯାଇଥିଲେ ସୁଦ୍ଧା ବିପ୍ଳବୀ ମନୋବଳ ଇସ୍ପାତ ଭଳି ଟାଣ ଥିଲା।

୧୯୫୭ ରୁ ୭୦ ପର୍ଯ୍ୟନ୍ତ ସେ ଥିଲେ ଆଡ଼ାପଡ଼ା ପଞ୍ଚାୟତର ସରପଞ୍ଚ। ଏହି ସମୟରେ ବିଭିନ୍ନ ଶିକ୍ଷାନୁଷ୍ଠାନ ଓ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ତାଙ୍କ ନେତୃତ୍ୱରେ ପ୍ରତିଷ୍ଠା ହୋଇଥିଲା। ୨୧ ଡିସେମ୍ବର ୧୯୮୭ ତାରିଖ ଦିନ ବ୍ରହ୍ମପୁର ମେଡ଼ିକାଲରେ ୬୭ ବର୍ଷ ବୟସରେ ମୃତ୍ୟୁ ବରଣ କରିଥିଲେ। ମୃତ୍ୟୁ ବେଳକୁ ସେ ପାର୍ଟିର ଜିଲ୍ଲା ପରିଷଦ ସଭ୍ୟ ଥିଲେ।

Digitized by srujanika@gmail.com

# କମ୍ରେଡ୍ ନଟବର ମଲିକ

କମ୍ରେଡ୍ ନଟବର ମଲିକ ବ୍ରହ୍ମପୁର ନିକଟସ୍ଥ କେରଣ୍ଡିମାଳ ଅଞ୍ଚଳ ଆଦିବାସୀ ଗାଁ ଭଗବାନପୁରରେ ଜନ୍ମ ଗ୍ରହଣ କରିଥିଲେ । ସେ ତତ୍କାଳୀନ ପ୍ରାଇମେରୀ ଶିକ୍ଷା ଲାଭକରି ସରକାରୀ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । କମ୍ୟୁନିଷ୍ଟ ପାର୍ଟିର ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଶିକ୍ଷକତା ତ୍ୟାଗକରି ପାର୍ଟିରେ ଯୋଗ ଦେଇଥିଲେ ।

ଆଦିବାସୀ, ହରିଜନ, ଭାଗଚାଷୀ ଆନ୍ଦୋଳନ ମଧ୍ୟରେ ନିଜକୁ ଉତ୍ସର୍ଗ କରି ସାହୁକାର, ଜମିଦାର, ଭୂସ୍ୱାମୀମାନଙ୍କ ବିରୁଦ୍ଧରେ ଗରିବ ଲୋକଙ୍କୁ ସଂଗଠିତ କରୁଥିଲେ । ଆଦିବାସୀ ମହାସଭାର ସମ୍ପାଦକ ରହି ସମଗ୍ର କେରଣ୍ଡିମାଳ ଅଞ୍ଚଳର ଆଦିବାସୀମାନଙ୍କୁ ସଂଗଠିତ କରୁଥିଲେ । ତାଙ୍କ ବିରୁଦ୍ଧରେ ପୋଲିସ ଓ ଜଙ୍ଗଲ କର୍ମଚାରୀମାନେ ବହୁବାର ମିଥ୍ୟା ମକଦ୍ଦମା କରି ଜେଲ ଦଣ୍ଡ ମଧ୍ୟ ଦେଇଥିଲେ । ତାଙ୍କର ଆର୍ଥିକ ଦୁରବସ୍ଥାକୁ ଲକ୍ଷ୍ୟକରି କଂଗ୍ରେସ ନେତାମାନେ ତାଙ୍କୁ ବହୁବାର ପ୍ରଲୋଭନ ଦେଖାଇଥିଲେ ମଧ୍ୟ ସେଥିରେ ସେ ଜୀବନର ଶେଷ ମୁହୂର୍ତ୍ତଯାଏ କେବେହେଲେ ବିଚଳିତ ହୋଇନଥିଲେ । କଂଗ୍ରେସ ସରକାର କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ ଘୋଷଣା କରି ଆକ୍ରମଣ ଆରମ୍ଭ ହେବାରୁ ସେ ଅନ୍ୟ ସାଥୀମାନଙ୍କ ସହ ଅଜ୍ଞାତବାସ କରି ଆଦିବାସୀ ଓ ଗରିବ ଲୋକଙ୍କୁ ସଂଗଠିତ କରୁଥିଲେ । ତାଙ୍କର ବଳିଷ୍ଠ ନେତୃତ୍ୱ ଫଳରେ ଗଞ୍ଜାମ ଜିଲ୍ଲାର ସମସ୍ତ ଆଦିବାସୀ ଜମି, ଗଛ, ଘର ଆଦିର ଅଧିକାର କରିବା ଆନ୍ଦୋଳନ ସଫଳ ହୋଇଥିଲା । ଭାଗଚାଷୀମାନେ ଜମିର ଅଧିକାର ପାଇ ପାରିଥିଲେ ।

---

# କମ୍ରେଡ୍ ଦିବାକର ରାଉତ

ଘୁମୁସର ତାଲୁକା ଲାଲସିଂଗ ଗ୍ରାମରେ ସୁନାମଧେୟ ଉଚ୍ଚ ମଧ୍ୟବିତ୍ତ ରାଉତ ପରିବାରରେ ସାଥୀ ଦିବାକରଙ୍କ ଜନ୍ମ । ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ବିଧିବଦ୍ଧ ଭାବେ ଗଠନ ହେବା ପୂର୍ବରୁ ପ୍ରଥମ କରି ମାର୍କସ୍‌ବାଦ ରାଜନୈତିକ ଶିକ୍ଷା ଶିବିର ସଂଗଠିତ ହୁଏ ଏହି ଲାଲସିଂଗ ଗ୍ରାମରେ ଏବଂ ତାର ନେତୃତ୍ୱ ନିଅନ୍ତି ସ୍ୱର୍ଗୀୟ ଆନନ୍ଦ ଚନ୍ଦ୍ର ରାଉତ, ମାଧବ ରାଉତ ପ୍ରମୁଖ ରାଉତ ପରିବାର । ପ୍ରଥମେ ଉକ୍ତ ରାଉତ ପରିବାର ଏମ୍. ଏନ୍. ରାୟଙ୍କ ସଂଗଠିତ ରେଡ଼ିକାଲ ଡେମୋକ୍ରାଟିକ୍ ପାର୍ଟିର ପ୍ରଭାବରେ ଆସିଥିଲେ । ଏହାର ବାସ୍ତବ ରୂପରେଖ ପ୍ରକାଶ ପାଇବାପରେ ଏବଂ ୧୯୪୩-୪୪ ବେଳକୁ କମ୍ୟୁନିଷ୍ଟ ପାର୍ଟିର ପ୍ରଚାର ଫଳରେ ରାଉତ ପରିବାର ସେଥିପ୍ରତି ଆକୃଷ୍ଟ ହେଲେ ଏବଂ ଲାଲସିଂଗ ଗ୍ରାମରେ ଗଞ୍ଜାମ ଜିଲ୍ଲାର ମାର୍କସବାଦୀ ଶିକ୍ଷା ଶିବିର ସଂଗଠିତ ହେଲା । ଶିକ୍ଷାଗୁରୁ ହେଲେ ସାଥୀ ଗୁରୁଚରଣ ପଟ୍ଟନାୟକ, ମୋହନ ଦାସ, ବିଜୟ ଚନ୍ଦ୍ର ଦାସ, ରାମକୃଷ୍ଣ ପତି ଅଗେରା ! ସଂଗଠନକାରୀ ଥିଲେ ସ୍ୱର୍ଗୀୟ ଗୋବିନ୍ଦ ପ୍ରଧାନ—ରାଉତ ପରିବାରର ବନ୍ଧୁ । ସାଥୀ ଦିବାକର ରାଉତ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ କଲେଜ ପାଠ ଛାଡ଼ି ସପ୍ଲାଇ ଇନସ୍‌ପେକ୍ଟର ଚାକିରୀରେ ଯୋଗ ଦେଇଥିଲେ । କିନ୍ତୁ ସ୍ୱାଧୀନଚେତା ଦିବାକର ସେଥିରେ ବେଶିଦିନ ଚାକିରୀ କରିପାରିଲେ ନାହିଁ । ସେ ଚାକିରୀ ଛାଡ଼ି କମ୍ୟୁନିଷ୍ଟ ଆନ୍ଦୋଳନରେ ଯୋଗଦେଲେ ଓ ପରେ କମ୍ୟୁନିଷ୍ଟ ହେଲେ ।

ସାଥୀ ଦିବାକର ରାଉତ ଘୁମୁସର ତାଲୁକା କମ୍ୟୁନିଷ୍ଟ ପାର୍ଟିର ବହୁଦିନ ଧରି ସମ୍ପାଦକ ଥିଲେ ଏବଂ ବିଭିନ୍ନ ଆନ୍ଦୋଳନରେ ଭାଗ ନେଇଥିଲେ । ସେ ଯୁବ ବୟସରେ ଶକ୍ତ ବେମାରରେ ପଡ଼ି ପ୍ରାଣତ୍ୟାଗ କରିଥିଲେ ।



Digitized by srujanika@gmail.com

# ସାଥୀ ଭରତ ଜେନା

ଆସିକା ନିକଟସ୍ଥ ପୁଡ଼ୁଗେଶ୍ୱର ପଲ୍ଲୀ ଗ୍ରାମର ଶ୍ରୀ ଅର୍ଜୁନ ଜେନାଙ୍କ ପୁତ୍ର ଭରତ ୧୯୨୩ ସାଲରେ ଜନ୍ମ । ଶେରଗଡ଼, ଧରାକୋଟ, ଆସିକା, ଘୁମୁସର ଅଞ୍ଚଳରେ ଚାଲିଥିବା ଚାଷୀ ଆନ୍ଦୋଳନର ପ୍ରଭାବରେ ଏବଂ ସାଥୀ ଗୋବିନ୍ଦ ପ୍ରଧାନ ଓ ସାଥୀ ହରିହର ଦାଶଙ୍କ ସଂପର୍କରେ ଆସି ୧୯୪୭ ସାଲରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ । ୧୯୪୮ ମଇ ୨୪ ତାରିଖ ସେତେବେଳର ଓଡ଼ିଶାର ପ୍ରଧାନମନ୍ତ୍ରୀ ଡା: ହରେକୃଷ୍ଣ ମହତାବଙ୍କ ନିର୍ଦ୍ଦେଶରେ ଡାକରଡ଼ାରେ ଶେରଗଡ଼ ଜମିଦାରର ସ୍ୱାର୍ଥକୁ ରକ୍ଷା କରିବା ପାଇଁ ଯେଉଁ ଗୁଳିଚାଳନା କରି ୭ ଜଣଙ୍କୁ ଶହୀଦ କରାଗଲା ତାର ପ୍ରତିବାଦ ଓ ଚାଷୀଙ୍କୁ ସଂଗଠିତ କରୁଥିବାରୁ ସାଥୀ ଭରତ ଜେନା ଦୁଇବର୍ଷ ଛଅ ମାସ ପର୍ଯ୍ୟନ୍ତ ବ୍ରହ୍ମପୁର ଓ କୋରାପୁଟ ଜେଲରେ ଥିଲେ । ଜେଲରୁ ଖଲାସ ପରେ ଆସିକା ତାଲୁକା କମିଟିର ସଂପାଦକ ଭାବେ ଦୀର୍ଘ ୨୫ ବର୍ଷ କାଳ ରହି ସାଥୀ ଏମ୍: ଜଗନ୍ନାଥ ସ୍ୱାମୀ ଓ ଅନ୍ୟମାନଙ୍କ ସହଯୋଗରେ ଆସିକା ଅଞ୍ଚଳରେ ଏକ ରାଜନୈତିକ ଶକ୍ତି ହିସାବରେ କମ୍ୟୁନିଷ୍ଟ ପାର୍ଟିକୁ ପ୍ରତିପାଦ କରିଥିଲେ । ୧୯୭୦ ସାଲରେ ତାଙ୍କର ମୃତ୍ୟୁ ହୋଇଥିଲା ।

---

# ସାଥୀ ଯୁଧିଷ୍ଠିର ରାଉଳ

ସାଥୀ ଯୁଧିଷ୍ଠିର ରାଉଳ ଛତ୍ରପୁର ସହରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା କଲିକତାସ୍ଥ ଦୁର୍ଗାପୁର ଇସ୍ପାତ କାରଖାନାର ଜଣେ ମଜଦୁର ଥିଲେ । ସାଥୀ ଯୁଧିଷ୍ଠିର ପ୍ରାଥମିକ ଶିକ୍ଷା ପରେ କଲିକତା ଯାଇ ଦୁର୍ଗାପୁରସ୍ଥ କାରଖାନାରେ ଚାକିରି କଲେ । ସେଠାରେ ଏ: ଆଇ: ଟି: ୟୁ: ସି ଶ୍ରମିକ ସଂଗଠନ ସହ ସଂପୃକ୍ତ ହୋଇ ବହୁ ଶ୍ରମିକ ଆନ୍ଦୋଳନରେ ଭାଗ ନେଇଥିଲେ । ଗଞ୍ଜାମ ଠାରେ ଜୟଶ୍ରୀ କେମିକାଲସ୍ କାରଖାନା ପ୍ରତିଷ୍ଠା ହେବା ପରେ ସେ କଲିକତାରୁ ଚାକିରି ଛାଡ଼ି ଜୟଶ୍ରୀ କାରଖାନାରେ ନିଯୁକ୍ତି ପାଇଲେ । ଜୟଶ୍ରୀ କେମିକାଲ୍ ଏମ୍ପ୍ଲଇଜ୍ ୟୁନିୟନ ହେଉଛି ଏକମାତ୍ର ଶ୍ରମିକ ସଂସ୍ଥା ଯାହାକି ସାଥୀ ଯୁଧିଷ୍ଠିରଙ୍କ ନେତୃତ୍ୱରେ ସକ୍ରିୟ ଶ୍ରମିକ ଆନ୍ଦୋଳନ କରି ଶ୍ରମିକମାନଙ୍କ ବହୁ ଦାବୀ ହାସଲ କରିପାରିଥିଲେ । ସାଥୀ ଲକ୍ଷ୍ମଣ ମହାପାତ୍ର ସଭାପତି ଏବଂ ସାଥୀ ସଦାନନ୍ଦ ମହାନ୍ତି କାର୍ଯ୍ୟକାରୀ ସଭାପତି ଥିବା ବେଳେ ସାଥୀ ଯୁଧିଷ୍ଠିର ରାଉଳ ଉକ୍ତ ସଂଗଠନର ସଂପାଦକ ଥିଲେ । ସେ ମୃତ୍ୟୁ ପର୍ଯ୍ୟନ୍ତ ଶ୍ରମିକ ଆନ୍ଦୋଳନରେ ସାମିଲ ହୋଇଥିଲେ ।

---

# ସାଥୀ ଚତୁର୍ଭୁଜ ସାହୁ

ପ୍ରଜାପୀଡ଼କ ଖଲିକୋଟ ଜମିଦାରୀ ବିରୁଦ୍ଧରେ ଯେଉଁ ରଇତ ନେତାମାନେ ସ୍ୱର ଉତ୍ତୋଳନ କରିଥିଲେ ସେମାନଙ୍କ ମଧ୍ୟରେ ସାଥୀ ଚତୁର୍ଭୁଜ ସାହୁ ଅନ୍ୟତମ । କୋଦଳା ତାଲୁକା ବଡ଼ଆଗୁଳ ଗାଁରେ ତାଙ୍କର ଜନ୍ମ । ରଇତ ପ୍ରାଣ ଗୋବିନ୍ଦ ପ୍ରଧାନଙ୍କ ସହ ସେ ଜମିଦାରୀ, ମୁସ୍ତାଦାରୀ ବିରୋଧି ଆନ୍ଦୋଳନରେ ଅଗ୍ରଣୀ ନେତା ଥିଲେ । ୧୯୪୮ କୃଷକ ଆନ୍ଦୋଳନ କରୁଥିବା ଅଭିଯୋଗରେ କମ୍ୟୁନିଷ୍ଟ ପାର୍ଟିକୁ କଂଗ୍ରେସ ସରକାର ବେଆଇନ ଘୋଷଣା କରିବା ଯୋଗୁଁ କମ୍ୟୁନିଷ୍ଟ, ଛାତ୍ର ଓ କୃଷକ ନେତାମାନେ ଗୁପ୍ତ ଭାବରେ ଜନ ଜାଗରଣ ଓ ଗଣ ସଂଗଠନ କରୁଥିଲେ । ସେତିକି ବେଳେ ବଡ଼ଆଗୁଳ ସେମାନଙ୍କ ଏକ କେନ୍ଦ୍ର ଥିଲା । ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ବିଜୟ ଚନ୍ଦ୍ର ଦାଶ, ସାଥୀ ହରିହର ଦାଶ, ସାଥୀ ସାଧୁଚରଣ ମହାନ୍ତି ପ୍ରମୁଖ ନେତାମାନେ ଏଠାରୁ ନେତୃତ୍ୱ ଦେଉଥିଲେ ଏବଂ ସାଥୀ ଚତୁର୍ଭୁଜ ସାହୁଙ୍କ ନେତୃତ୍ୱରେ ସମସ୍ତ ତଦାରଖ କାର୍ଯ୍ୟ ଚାଲିଥିଲା ।

*Digitized by srujanika@gmail.com*

## ସାଥୀ କେ. ବୈଷ୍ଣବ ରେଡ଼ି

ଛତ୍ରପୁର ତାଲୁକା ଗଞ୍ଜାମ ନିକଟସ୍ଥ କଲ୍ୟାଣପୁର ଗ୍ରାମର ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ୧୫-୪-୪୯ ରେ ଜନ୍ମ । ସେ ବି. ଏ. ଡିଗ୍ରୀ ପାଶ କଲାପରେ ଜୟଶ୍ରୀ କେମିକାଲ ଓ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ କିରାଣୀ ଚାକିରୀ କରିଥିଲେ । କଲେକ୍ଟର ଅଫିସରେ ଚାକିରୀ କରିବା ସମୟରେ ଓକିଲାତି ପାସ କରି ଚାକିରୀ ଛାଡି ଛତ୍ରପୁରରେ ଓକିଲାତି ବ୍ୟବସାୟ କଲେ । କଲ୍ୟାଣପୁର ଝରପଦର, ମାଳିଜଗନ୍ନାଥପୁର ପ୍ରଭୃତି ଗାଁର ଭାଗଚାଷୀ ଆନ୍ଦୋଳନ ଓ ଗରିବ ଲୋକଙ୍କୁ ଜମି ଦେବା ଆନ୍ଦୋଳନର ପ୍ରଭାବରେ ପ୍ରଭାବିତ ହେବା ସଙ୍ଗେ ସଙ୍ଗେ ସାଥୀ ବିଶ୍ୱନାଥ ସାହୁ ଓ ସାଥୀ ଲକ୍ଷ୍ମଣ ମହାପାତ୍ରଙ୍କ ସମ୍ପର୍କରେ ଆସି ୧୯୭୪ ସାଲରେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ । ଛତ୍ରପୁର ତାଲୁକା ବିଶେଷ କରି ଗଞ୍ଜାମ ଅଞ୍ଚଳର ଜମିଜମା ଆନ୍ଦୋଳନ ଓ ଜନହିତକର କାର୍ଯ୍ୟରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଏଣୁ ତାଙ୍କ ବିରୁଦ୍ଧରେ କଂଗ୍ରେସ ଦଳ ଓ ପୋଲିସ୍ ବହୁ ମିଥ୍ୟା ମକଦ୍ଦମାମାନ କରିଥିଲେ । ସେ ବହୁବର୍ଷ ଧରି ଗଞ୍ଜାମ ଆଞ୍ଚଳିକ କମିଟିର ସଂପାଦକ, ଜିଲ୍ଲା କାର୍ଯ୍ୟକାରୀ କମିଟିର ସଭ୍ୟ, ଜୟଶ୍ରୀ କେମିକାଲ୍ ଏମ୍ପ୍ଲଇଜ ୟୁନିୟନର କମିଟି ସଭ୍ୟ, ଛତ୍ରପୁର କାଜୁନାଟ କୋ-ଅପେରେଟିଭ୍ ସୋସାଇଟିର ସଭାପତି ହୋଇଥିଲେ । ଗଞ୍ଜାମ ଅଞ୍ଚଳରୁ ଛତ୍ରପୁରକୁ ମୋଟର ସାଇକେଲରେ ଆସୁଥିବା ସମୟରେ ଏକ ଟ୍ରକ୍ ଦୁର୍ଘଟଣାରେ ୧୧-୪-୮୯ ରେ ମୃତ୍ୟୁ ଘଟିଥିଲା ।

---

## କମ୍ରେଡ଼୍ ଗାଣ୍ଡୁ ସାହୁ

ଗଞ୍ଜାମ ଜିଲ୍ଲା ମୋହନାର ସଂଗ୍ରାମୀ ସାଥୀ ଗାଣ୍ଡୁ ସାହୁ କମ୍ୟୁନିଷ୍ଟ ଆଦର୍ଶରେ ଜୀବନକୁ ଗଢ଼ି ରାତି ଦିନ ଆଦିବାସୀମାନଙ୍କ ପର୍ଣ୍ଣକୁଟୀରରେ ପେଜ ତୋରାଣୀ ପିଇ ସେମାନଙ୍କ ଦୁଃଖସୁଖ ସହିତ ନିଜକୁ ସାମିଲ କରିଥିବା ସାଥୀ ସେ । ସେ ନିଜେ ଆଦିବାସୀ ନଥିଲେ, ସେ ଉଚ୍ଚ ପାଠୁଆ କମ୍ୟୁନିଷ୍ଟ ନଥିଲେ । ମାତ୍ର ଥିଲେ ଜଣେ ବିପ୍ଳବୀ କମ୍ୟୁନିଷ୍ଟ । ଶୋଷିତ ଶ୍ରେଣୀ ଉପରେ ତାଙ୍କର ଅଗାଧ ଆସ୍ଥା । ସେମାନଙ୍କୁ ଦୟାକରି ସେମାନଙ୍କର ସେବା ସେ କରୁନଥିଲେ । ମହାଜନ, ସାହୁକାର, ଫରେଷ୍ଟବାଲା, ହାଟ ଦଣ୍ଡିବାଲା ଆଉ ପୁଞ୍ଜିପତି ଦଳର ଟାଉଟରମାନେ ଆଦିବାସୀମାନଙ୍କୁ କିପରି ଶୋଷଣ କରନ୍ତି, ଠକନ୍ତି, ଦମନ କରନ୍ତି, ଜେଲରେ ପୁରନ୍ତି, ମିଛ ମକଦ୍ଦମାରେ ପକାନ୍ତି, ଜମି ନେଇ ଯାଆନ୍ତି, କୁକୁଡା-ଧାନ, କଂସାବାସନ, ସାମାନ୍ୟ ସୁନାଗହଣା ଥିଲେ ସେ ସବୁକୁ କିପରି ଲୁଣ୍ଠନ କରନ୍ତି, ତାହାର ପ୍ରମାଣିତ କାହାଣୀମାନ ଲେଖି ନୂଆ ଦୁନିଆକୁ ସମ୍ବାଦ ପ୍ରେରଣ କରନ୍ତି ଏକ ଧାରରେ ପରିଣତ ହୋଇଥିଲା । ସେ ଖାଲି ସେମାନଙ୍କ ଦୁଃଖ କାହାଣୀ ବର୍ଣ୍ଣନା କରୁନଥିଲେ । ଆଦିବାସୀମାନଙ୍କ ସଙ୍ଗଠନ ଗଢ଼ି ସେମାନଙ୍କ ଲଢ଼େଇର ଅଗ୍ରଭାଗରେ ରହୁଥିଲେ । ପାର୍ଟିର ସଭା ସମିତି, ସମାବେଶରେ ଦୂରଦୂରାନ୍ତ ବଣ ପାହାଡ ଘେରା ଜଙ୍ଗଲର ଗାଁ ଗାଁରୁ ଆଦିବାସୀଙ୍କୁ ଠୁଳ କରୁଥିଲେ । ପୋଲିସ ଓ ମହାଜନମାନେ, ଫରେଷ୍ଟବାଲାମାନେ ତାଙ୍କୁ ସେମାନଙ୍କ ଅବାଧ ଲୁଣ୍ଠନ, ଶୋଷଣର କଣ୍ଟା ବିଚାରୁଥିଲେ । ବାରମ୍ବାର ଧରି ନେଉଥିଲେ । ମାଡମାରି ତାଙ୍କ ଦୁଇଟି ଦାନ୍ତ ଭାଙ୍ଗି ଦେଇଥିଲେ । ମାତ୍ର ଅନମନୀୟ ସେ ବୀର ସାଥୀ । ଅଟଳ ତାଙ୍କର ସଂକଳ୍ପ । ଗଞ୍ଜାମ ପାର୍ଟିରେ ଆଦିବାସୀଙ୍କ ଜଣେ ସଙ୍ଗଠକ ଭାବେ ସ୍ମରଣୀୟ ହୋଇ ରହିବେ ।

---

## କମ୍ରେଡ଼୍ ଜଗନ୍ନାଥ ମିଶ୍ର

ପାରଳାଖେମୁଣ୍ଡିର ଜନନେତା ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପୂର୍ବତନ ସଦସ୍ୟ, ଓଡିଶା ବିଧାନସଭାର ଏକଦା କମ୍ୟୁନିଷ୍ଟ ଏମ୍. ଏଲ୍. ଏ. ସାଥୀ ଜଗନ୍ନାଥ ମିଶ୍ରଙ୍କର ୧୯୮୦ ସେପ୍ଟେମ୍ବରରେ ଦେହାନ୍ତ ହୋଇଯାଇଛି । ସାଥୀ ଜଗନ୍ନାଥ ମିଶ୍ର ପାରଳାଖେମୁଣ୍ଡିରେ ଚାଷୀ ଆନ୍ଦୋଳନର ଜଣେ ବିଶିଷ୍ଟ ନେତା ଥିଲେ ଏବଂ ସ୍ୱାଧୀନତା ପରେ ବହୁବାର କାରାବରଣ କରିଥିଲେ ।

Digitized by srujanika@gmail.com

# କମ୍ରେଡ୍ ନାରାୟଣ ନାୟକ

ଘୁମୁସର ତାଲୁକା ଟିଳସିଂଗ ଗ୍ରାମରେ ସାଥୀ ନାରାୟଣ ନାୟକଙ୍କ ଜନ୍ମ । ସେ ୧୯୫୭ ସାଲରେ ସ୍ୱର୍ଗୀୟ ଗୋବିନ୍ଦ ପ୍ରଧାନଙ୍କ ସମ୍ପର୍କରେ ଆସି ୨ୟ ସାଧାରଣ ନିର୍ବାଚନ ବେଳେ କମ୍ୟୁନିଷ୍ଟ ପ୍ରାର୍ଥୀ ସାଥୀ ସୁମା ନାୟକ ଓ ସାଥୀ ଗୋବିନ୍ଦ ପ୍ରଧାନଙ୍କ ନିର୍ବାଚନରେ ସକ୍ରୀୟ ଭୂମିକା ଗ୍ରହଣ କରିଥିଲେ । ତା ପରବର୍ତ୍ତୀ ଅବସ୍ଥାରେ ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ଭଞ୍ଜନଗର ତାଲୁକାର ବିଭିନ୍ନ ସମସ୍ୟା ତଥା—ବଞ୍ଜର ଜମିର ପଟ୍ଟା, ଆଦିବାସୀ, ହରିଜନ ଓ ଗରିବ ଲୋକଙ୍କୁ ଜମିଦେବା, ବ୍ୟାପକ ଜଳସେଚନ କରି ଜମିକୁ ଜଳଯୋଗାଣ, ଜଙ୍ଗଲ ସମ୍ପଦର ସୁରକ୍ଷା ସଙ୍ଗେ ସଙ୍ଗେ ଆଦିବାସୀମାନଙ୍କୁ ଜମିଦେବା ଓ ଥଇଥାନ କରିବା, ଗ୍ରାମ୍ୟ ଉନ୍ନୟନ ପ୍ରଭୃତି ଜନଦାବୀ ଆନ୍ଦୋଳନରେ ସକ୍ରୀୟ ଭାଗ ନେଇଥିଲେ । ସେ କୃଷକ ସଭାର ଜଣେ ନିର୍ଭୀକ ଟାଣୁଆ ନେତା ଥିଲେ ଓ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ ।

---

# ସାଥୀ ହରିନାଥ ରାଉଳ

ଛତ୍ରପୁର ତାଲୁକା ଚିକଲଖଣ୍ଡି ଗ୍ରାମରେ ସାଥୀ ହରିନାଥ ରାଉଳଙ୍କ ଜନ୍ମ । ସେ ଉଚ୍ଚ ଶିକ୍ଷା ପରେ ପ୍ରଥମେ ପୋଲିସ୍ ବିଭାଗର ସବ୍-ଇନିସ୍‌ପେକ୍ଟର ଥିଲେ । ସେ ଜଣେ ସଚ୍ଚୋଟ, ନିଷ୍ଠାବାନ ଓ ନ୍ୟାୟବାନ ପୋଲିସ ଅଫିସର ଭାବେ କାର୍ଯ୍ୟ କରିଥିଲେ । ପୋଲିସ ବିଭାଗର ଦୁର୍ନୀତି, ମିଥ୍ୟା ରିପୋର୍ଟ ଦେବା, ପ୍ରଭୃତିରେ ବିତୃଷ୍ଣା ହୋଇ ପୋଲିସ ଚାକିରୀରୁ ଇସ୍ତଫା ଦେଲେ । ସେ ତତ୍‌କାଳୀନ ଗଞ୍ଜାମ ଜିଲ୍ଲା ବୋର୍ଡରେ ଜୁନିୟର ଇଂଜିନିୟର ଭାବେ କାର୍ଯ୍ୟ କରିଥିଲେ । ସେଥିରେ ମଧ୍ୟ ତାଙ୍କର ମନ ମାନିଲା ନାହିଁ । ଏଣୁ ୫୦ ଦଶକ ଆରମ୍ଭରେ ସେ ଇସ୍ତଫା ଦେଲେ ।

ସେ ଗାନ୍ଧୀବାଦୀ ମତ ପୋଷଣ କରୁଥିଲେ । ୧୯୫୨ ପ୍ରଥମ ସାଧାରଣ ନିର୍ବାଚନ—ଦୀର୍ଘ ୩ ବର୍ଷରୁ ଅଧିକ କାଳ ଅଟକବନ୍ଦୀ ରୂପେ ଜେଲବରଣ କରି କମ୍ୟୁନିଷ୍ଟ ନେତାମାନେ ନିର୍ବାଚନର ଅବ୍ୟବହିତ ପୂର୍ବରୁ ଖଲାସ ହୋଇ ଆସିଥାନ୍ତି । ଏପରି ଅବସ୍ଥାରେ କମ୍ରେଡ୍ ବିଶ୍ୱନାଥ ସାହୁଙ୍କ ସହ ହରିନାଥ ରାଉଳଙ୍କ ଭେଟ—ବହୁ ଆଲୋଚନା ପରେ ସେ କମ୍ୟୁନିଷ୍ଟ ଆଦର୍ଶ ପ୍ରତି ଆକୃଷ୍ଟ ହେଲେ । ପାର୍ଟି ଲୋକସଭା ପ୍ରାର୍ଥୀ ସାଥୀ ବିଜୟ ଚନ୍ଦ୍ର ଦାଶଙ୍କ ପାଇଁ ଓ ନିର୍ବାଚନରେ ଜୟଯୁକ୍ତ ପାଇଁ ଛତ୍ରପୁର ଅଞ୍ଚଳରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ନିର୍ବାଚନ ପରେ ଛତ୍ରପୁର, ଗଞ୍ଜାମ ଓ ପାଲୁର ଅଞ୍ଚଳରେ ଜମିଦାରୀ ବିରୋଧି ଆନ୍ଦୋଳନ, ଲୁଣ ଚାଷୀଙ୍କ ଆନ୍ଦୋଳନ, ଲେସିପ୍ରଥାର ଉଚ୍ଛେଦ, ଆଦର୍ଶ ଗ୍ରାମ ପଞ୍ଚାୟତ ଗଠନ ପ୍ରଭୃତି ଆନ୍ଦୋଳନରେ ସେ ସାଥୀ ବିଶ୍ୱନାଥ ସାହୁଙ୍କ ଘନିଷ୍ଠ ସହଯୋଗୀ ଓ ସହକର୍ମୀ ହେଲେ । ମାର୍କସ୍‌ବାଦ-ଲେନିନବାଦ ପ୍ରତି ଆକୃଷ୍ଟ ହୋଇ ସେ ପାର୍ଟିର ସଭ୍ୟପଦ ଗ୍ରହଣ କଲେ । ସେ ଚିକଲଖଣ୍ଡି ଗ୍ରାମ ପଞ୍ଚାୟତକୁ ଏକ ଆଦର୍ଶ ଗ୍ରାମ ପଞ୍ଚାୟତରେ ପରିଣତ କରି ବିଶେଷ ପ୍ରଶଂସାବାନ ହୋଇଥିଲେ । ବିନା ଟିକସରେ ପଞ୍ଚାୟତର ଆୟ ପାଇଁ ମାଛଚାଷ କରିବା ଉଦ୍ୟମ ରାଜ୍ୟ ମଧ୍ୟରେ ତାଙ୍କର ପ୍ରଥମ ଓ ଆଦର୍ଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ପୋଖରୀରୁ ଦଳ ବାହାର କରି ଓ ଗ୍ରାମ୍ୟ ସଫେଇ କରି କମ୍ପୋଷ୍ଟ କରି ଆୟ କରିବା ବାଟ ସେ ଦେଖାଇଥିଲେ । ଉନ୍ନତ ଗୋ-ସମ୍ପଦ ବୃଦ୍ଧି ଓ କୁକୁଡା ଚାଷ ଆଦିର ପ୍ରବର୍ତ୍ତକ ସେ ଥିଲେ । ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସେ ଜିଲ୍ଲା ପରିଷଦର ସଭ୍ୟ ଥିଲେ । ଦାରିଦ୍ର୍ୟର କଷାଘାତରେ ସେ ପାର୍ଟିର ଅନିଚ୍ଛା ସତ୍ତ୍ୱେ କୋରାପୁଟ ଯାଇ କଣ୍ଟ୍ରାକ୍ଟରୀ ବ୍ୟବସାୟ କରିଥିଲେ । ଆମ ଜିଲ୍ଲା ପାର୍ଟି ବିଶେଷ କରି ଛତ୍ରପୁର ଅଞ୍ଚଳର ସେ ଜଣେ ନିଷ୍ଠାବାନ, ସଚ୍ଚୋଟ ଓ ଆଦର୍ଶବାଦୀ କମ୍ୟୁନିଷ୍ଟ କର୍ମୀ ହିସାବରେ ଜନାଦୃତ ଥିଲେ ।

Digitized by srujanika@gmail.com

## ସାଥୀ କାଶିନାଥ ପାତ୍ର

ବ୍ରହ୍ମପୁର ସହରରେ କମ୍ୟୁନିଷ୍ଟ ପାର୍ଟି ଗଠନରେ ଯେଉଁ କେତେଜଣ ନିଷ୍ଠାବାନ, ଦେଶପ୍ରେମୀ କର୍ମୀ ଜନସାଧାରଣଙ୍କ ପାଇଁ ତ୍ୟାଗ ସ୍ୱୀକାର କରିଥିଲେ ସେମାନଙ୍କ ମଧ୍ୟରେ ସାଥୀ କାଶିନାଥ ପାତ୍ର ଅନ୍ୟତମ । ତାଙ୍କୁ କାଶିମାଷ୍ଟ୍ରେ ବୋଲି ସମସ୍ତେ ଜାଣନ୍ତି । ସେ କମ୍ୟୁନିଷ୍ଟ ପାର୍ଟି ସଭ୍ୟ ନଥିଲେ କିନ୍ତୁ ପାର୍ଟିର ସମସ୍ତ ଶୃଙ୍ଖଳାମାନି ସବୁ କାମରେ ଅଗ୍ରଣୀ ଭୂମିକା ନେଉଥିଲେ । ସେ ନିଜର ଗୁଜରାଣ ମେଣ୍ଟାଇବା ପାଇଁ ହୋଟେଲ ବ୍ୟବସାୟ "ରୟାଲ ହୋଟେଲ" କରିଥିଲେ । ସମସ୍ତ କର୍ମୀଙ୍କ ତାହା ଆଶ୍ରୟସ୍ଥଳୀ କହିଲେ ଅତ୍ୟୁକ୍ତି ହେବନାହିଁ । ସାଥୀ ବିଜୟ ଚନ୍ଦ୍ର ଦାସ, ସାଥୀ ବିନାୟକ ଆଚାର୍ଯ୍ୟ ପ୍ରଭୃତିଙ୍କ କର୍ମକେନ୍ଦ୍ର ସେହି ରୟାଲ ହୋଟେଲ । କାଶିମାଷ୍ଟ୍ରେ ଡ୍ରାମା ପ୍ରିୟ, ଡ୍ରାମା ନିର୍ଦ୍ଦେଶକ ଓ ଡ୍ରାମାରେ ଅଂଶ ଗ୍ରହଣ କରୁଥିଲେ । "ବୀର ହନୁମାନ ଜେମିନାସିୟମ"ର ପ୍ରତିଷ୍ଠାତା ଥିଲେ ଏବଂ ସେଠାରୁ ଖେଳ, କୁସ୍ତି-କସରତ ଶିକ୍ଷା ପାଇ ଅନେକ ଉତ୍କଳଶ୍ରୀ, ଅନ୍ଧ୍ରଶ୍ରୀ ଉପାଧି ମଧ୍ୟ ପାଇଥିଲେ । ସେ ଜଣେ ବିରାଟ ସଂଗଠକ ଥିଲେ । ତାଙ୍କୁ ପାର୍ଟି ସଭ୍ୟ ହେବା ପାଇଁ କହିଲେ—ସେ କହନ୍ତି କମ୍ୟୁନିଷ୍ଟ ପାର୍ଟିର ଶୃଙ୍ଖଳା ମାନି ଚଳିବା ବଡ଼ କଷ୍ଟ, ତା'ର ନିୟମାନୁବର୍ତ୍ତିତା, ନିଷ୍ଠା, ସଚ୍ଚୋଟତା ଦେଖିଲେ ଭୟ ଲାଗୁଛି ଏଣୁ ପାର୍ଟିର ସବୁ କାମ କରୁଥିଲେ ମଧ୍ୟ ପାର୍ଟି ସଭ୍ୟ ହୋଇନଥିଲେ । ବିଜୟ ଚନ୍ଦ୍ର ଦାସ, ବିନାୟକ ଆଚାର୍ଯ୍ୟ, ବ୍ରହ୍ମାନନ୍ଦ ପଣ୍ଡା, ଶଶୀଭୂଷଣ ପତି, ଆପନା ପାତ୍ର, ପରିକ୍ଷିତ ବିଶ୍ୱାଳ ଯେତେବେଳେ କମ୍ୟୁନିଷ୍ଟ ପାର୍ଟି ଛାଡ଼ି କଂଗ୍ରେସରେ ଯୋଗଦେଲେ ସେତେବେଳେ କାଶିମାଷ୍ଟ୍ରେଙ୍କ କ୍ରୋଧର ସୀମା ନଥିଲା । ସେମାନେ ବିଶେଷ କରି ବିନାୟକ ଆଚାର୍ଯ୍ୟ ଓ ବିଜୟ ଦାସ ଚଣ୍ଡାଳ କାମ କଲେ ବୋଲି ଘୃଣା କଲେ । କାଶିନାଥ ବାବୁଙ୍କ ସର୍ବଦା ବଡ଼ ଦାୟିତ୍ୱ ଥାଏ—ବଡ଼ ବଡ଼ ସଭା ସମ୍ମିଳନୀରେ ହଜାର ହଜାର ଲୋକଙ୍କ ପାଇଁ ଭୋଜନର ବ୍ୟବସ୍ଥା କରିବା । ଏପରିକି ତାଙ୍କର ନିଷ୍ଠାବାନ କାମରେ ପ୍ରୀତ ହୋଇ ବ୍ରହ୍ମପୁର ଏ.ଆଇ.ସି.ସି. ସଭା (ନେହେରୁଙ୍କ ସମୟ)ରେ ଭୋଜନର ଦାୟିତ୍ୱ ତାଙ୍କୁ ଦେଇଥିଲେ ଏବଂ ସେ ସୁରୁଖୁରୁ ରୂପେ ସେଇ କାମ ତୁଲାଇଥିଲେ । ତାଙ୍କପରି ନିଷ୍ଠାବାନ୍, ପରୋପକାରୀ ଓ କମ୍ୟୁନିଷ୍ଟ ପାର୍ଟିର ବିପଦର ବନ୍ଧୁ ବ୍ରହ୍ମପୁର ସହରରେ ବିରଳ ଥିଲେ କହିଲେ ଚଳେ ।

---

## କମ୍ରେଡ୍ ଜୁରୁ ପାତ୍ର

ଖେମୁଣ୍ଡି ତାଲୁକାର କିଙ୍ଗ ଓ ପ୍ରାକୃତିକ ନେତା ସାଥୀ ଜୁରୁ ପାତ୍ର ଥିଲେ । ସେ ବିଶେଷ ଶିକ୍ଷାଲାଭ କରି ନଥିଲେ ମଧ୍ୟ ତାଙ୍କର ସୂକ୍ଷ୍ମ ବୁଦ୍ଧି କୃଷକ ଆନ୍ଦୋଳନକୁ ପ୍ରଖର ଓ ତ୍ୱରାନ୍ୱିତ କରୁଥିଲା । ମୁସ୍ତାଦାର ବିରୋଧୀ ଆନ୍ଦୋଳନର ପ୍ରମୁଖ ନେତା ଥିଲେ । ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ନଥିଲେ ମଧ୍ୟ ପାର୍ଟିର ସମସ୍ତ କାର୍ଯ୍ୟକ୍ରମରେ ଅଗ୍ରଣୀ ଭୂମିକା ନେଉଥିଲେ । ସେ ବିଶେଷ କରି ଶେରଗଡ଼, ଧରାକୋଟ, ସାନଖେମୁଣ୍ଡି ଓ ବଡଖେମୁଣ୍ଡି ଜମିଦାରୀ ଅଞ୍ଚଳର କୃଷୀମାନଙ୍କଠାରୁ ଜମିଦାରୀ ଉଚ୍ଛେଦ ପରେ ଦୋହରା ଜଳକର ଆଦାୟ ବିରୋଧୀ ଆନ୍ଦୋଳନର ସ୍ରଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଗଞ୍ଜାମ ଜିଲ୍ଲା ରଇତ ସଭାର ଉପ-ସଭାପତି ଭାବେ ବହୁ ଦିନ ଧରି ଥିଲେ ଏବଂ କୃଷକ ପ୍ରାଣ, ରଇତ ସଭାର ସଭାପତି ସାଥୀ ଗୋବିନ୍ଦ ପ୍ରଧାନଙ୍କ ଅନ୍ତରଙ୍ଗ ସହକର୍ମୀ ଓ ପରାମର୍ଶଦାତା ହିସାବରେ ରହିଥିଲେ । ତାଙ୍କର ନେତୃତ୍ୱ ବଳରେ ବିଶେଷ କରି ଖେମୁଣ୍ଡି ଓ ଶେରଗଡ଼ ତାଲୁକାରେ ଦୃଢ଼ କୃଷକ ଆନ୍ଦୋଳନ ହୋଇପାରିଥିଲା ।

---

## କମ୍ରେଡ୍ ଡି. ଭି. ଏସ୍ ରାମାରାଓ

D. V. S. ରାମାରାଓଙ୍କ ଜନ୍ମ ଆନ୍ଧ୍ରପ୍ରଦେଶ ଭିଜିଆନଗରମ୍? ଜିଲ୍ଲାରେ । ବ୍ରହ୍ମପୁର ସହର ମାରେଲା ପରିବାର ଓ ଡାଃ ପ୍ରକାଶ ରାଓ ପରିବାର କମ୍ୟୁନିଷ୍ଟ ପାର୍ଟିର ଅତି ଦରଦୀ ଓ ବିପଦର ବନ୍ଧୁ ଥିଲେ । କମ୍ରେଡ ଡି. ଭି. ଏସ୍. ରାମାରାଓ ହେଉଛନ୍ତି ଡାଃ ପ୍ରକାଶ ରାଓଙ୍କ ପରିବାରର ଅନ୍ୟତମ ବ୍ୟକ୍ତି । ସେ ସ୍ୱର୍ଗତ ବିଜୟ ଚନ୍ଦ୍ର ଦାସଙ୍କ ପ୍ରଭାବରେ କମ୍ୟୁନିଷ୍ଟ ସଭ୍ୟପଦ ଗ୍ରହଣ କରିଥିଲେ ଏବଂ କମ୍ୟୁନିଷ୍ଟ ଆନ୍ଦୋଳନରେ ସେ ପ୍ରମୁଖ ଭୂମିକା ଗ୍ରହଣ କରି ଜେଲ ବରଣ କରିଥିଲେ । ବ୍ରହ୍ମପୁର ଟାଉନ୍ କମିଟି ଗଠନ, ଶ୍ରମିକ ସଂଗଠନ, ମୋଟର କର୍ମଚାରୀ ସଂଗଠନ, ପ୍ରଭୃତି ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ସେ ଆଜୀବନ ବ୍ରହ୍ମଚାରୀ ଥିଲେ । ଗଞ୍ଜାମ ବିଶେଷ କରି ବ୍ରହ୍ମପୁର ସହର କମ୍ୟୁନିଷ୍ଟ ପାର୍ଟି ଗଠନରେ ତାଙ୍କର ପ୍ରମୁଖ ଭୂମିକା ଚିର ସ୍ମରଣୀୟ ।

Digitized by srujanika@gmail.com

# କମ୍ରେଡ୍ ଅପଲ୍ ଲକ୍ଷ୍ମଣ ରାଓ

ଜୀବନରେ ଦୁଇ ଶହ ପୁସ୍ତକର ରଚୟିତା । ଓଡ଼ିଆ, ତେଲୁଗୁ, ଇଂରେଜୀ, ଋଷିଆନ୍, ଜର୍ମାନ ଭାଷାରେ ଧୁରୀଣ । ଋଷ ତେଲୁଗୁ ଭାଷାର ଅଭିଧାନ ସଂକଳକ ଭାରତର ସ୍ୱାଧୀନତା ସଂଗ୍ରାମର ସୈନିକ । ଆଦ୍ୟ ଜୀବନରେ ଶ୍ରମିକ ଆନ୍ଦୋଳନର ନେତା । ସେ ହେଉଛନ୍ତି ସାଥୀ ଆପାଲ୍ ଲକ୍ଷ୍ମଣ ରାଓ, ଘର ବ୍ରହ୍ମପୁର, ଗଞ୍ଜାମ । ମୃତ୍ୟୁ ବେଳକୁ ୮୭ ବର୍ଷ ହୋଇଥିଲା ।

୧୯୨୭ରେ ପୂର୍ବତନ ରାଷ୍ଟ୍ରପତି ଭି. ଭି. ଗିରିଙ୍କ ସହିତ ସେ ବ୍ରିଟିଶ ରେଳ କମ୍ପାନୀ ବେଙ୍ଗଲ ନାଗପୁର ରେଳବାଇ ଶ୍ରମିକଙ୍କ ଆନ୍ଦୋଳନରେ ନିଜକୁ ଜଡ଼ିତ କରାଇଥିଲେ ।

ସ୍ୱାଧୀନତା ସଂଗ୍ରାମରେ ଉଦ୍‌ବୁଦ୍ଧ ଯୁବକ ଲକ୍ଷ୍ମଣ ରାଓ ସତ୍ୟାନୁସନ୍ଧାନରେ ମହାତ୍ମା ଗାନ୍ଧୀଙ୍କ ସାବରମତୀ ଆଶ୍ରମରେ ଅନ୍ତେବାସୀ ହୋଇ ଖଦୀ ସମ୍ପର୍କରେ ଗବେଷଣା କରିଥିଲେ ।

ସ୍ୱାଧୀନତା ସଂଗ୍ରାମର ଉଦ୍‌ବୋଧନୀ ସାଙ୍ଗକୁ ସୋଭିଏତ୍ ୟୁନିଅନରେ ସମାଜବାଦୀ ବିପ୍ଳବ, ଶୋଷଣବିହୀନ, ଶ୍ରେଣୀ ବିହୀନ ନୂତନ ମାନବ ସମାଜ ଗଠନର ବାର୍ତ୍ତା ତାଙ୍କୁ ଉଦ୍‌ବେଳିତ କଲା । ବ୍ରିଟିଶ କଟକଣାକୁ ବେଖାତିର କରି ସେ ସୋଭିଏତ୍ ୟୁନିଅନ୍‌ରେ ହାଜର ହେଲେ ଏବଂ ସେଠାରେ ମାର୍କସ୍‌ବାଦ-ଲେନିନ୍‌ବାଦ ସମ୍ପର୍କରେ ବିଶେଷ ଅଧ୍ୟୟନ କଲେ । ସେଠାରେ ମଧ୍ୟ ସେ ଋଷଭାଷା ଓ ଜର୍ମାନୀ ଭାଷାରେ ବ୍ୟୁତ୍ପତ୍ତି ହାସଲ କଲେ ।

ସାଥୀ ଲକ୍ଷ୍ମଣ ରାଓ ସ୍ୱଦେଶକୁ ଫେରିଆସି ତେଲୁଗୁ ଭାଷାରେ ବିଭିନ୍ନ ପ୍ରଗତିଶୀଳ ପୁସ୍ତକ ରଚନା କଲେ ଏବଂ ବହୁ ଋଷୀୟ ପୁସ୍ତକ ତେଲୁଗୁ ଭାଷାକୁ ଭାଷାନ୍ତରିତ କରିଥିଲେ ।

ବ୍ରହ୍ମପୁରରେ ଅବସ୍ଥାନ କାଳରେ ସେ ଶାନ୍ତି ଓ ମୈତ୍ରୀ ଆନ୍ଦୋଳନର ଜଣେ ବିଶିଷ୍ଟ ପୁରୋଧା, ପଥପ୍ରଦର୍ଶକ ଥିଲେ । ବ୍ରହ୍ମପୁରରେ ରାଜ୍ୟ ଇସ୍‌କସ୍ ସମ୍ମିଳନୀ ଯେପରି ମହାସମାରୋହରେ ଅନୁଷ୍ଠିତ ହୋଇଥିଲା, ସେଥିରେ ତାଙ୍କର ଅବଦାନ ଅବିସ୍ମରଣୀୟ । ବିଶ୍ୱ ଶାନ୍ତି ଓ ଜାତି ଜାତି ମଧ୍ୟରେ ମୈତ୍ରୀ ଓ ସଦ୍‌ଭାବ ପ୍ରତିଷ୍ଠାର ଉଦ୍ୟମ ହେତୁ ତାଙ୍କୁ ସମାଜବାଦୀ ପୂର୍ବ ଜର୍ମାନୀର ଶାନ୍ତି ଆନ୍ଦୋଳନ ସ୍ୱର୍ଣ୍ଣ ପଦକରେ ଭୂଷିତ କରିଥିଲା ।

କମ୍ୟୁନିଷ୍ଟ ପାର୍ଟିର ସଭ୍ୟପଦ ନେବାକୁ ସେ ପରିଣତ ବୟସରେ ଏକ ଅପୂର୍ବ ଗୌରବ ବୋଲି ବିଚାରୁଥିଲେ । ତାଙ୍କ ମୃତ୍ୟୁରେ ଗଞ୍ଜାମରେ କମ୍ୟୁନିଷ୍ଟ ପରିବାରର ଅପୂରଣୀୟ କ୍ଷତି ହେଲା ।

---

# ସାଥୀ ଏଲ୍. ବେଣୁଗୋପାଳ ରାଓ

ବ୍ରହ୍ମପୁର ଟାଉନ ମଙ୍ଗଳବାରୀ ପେଣ୍ଠ ସାହିରେ ସାଥୀ ଏଲ୍. ବେଣୁଗୋପାଳଙ୍କ ଜନ୍ମ । ସେ ଭଲ ଦର୍ଜୀ ଥିଲେ । ବ୍ରହ୍ମପୁର ସହର ତଥା ଗଞ୍ଜାମ ଜିଲ୍ଲାରେ ୧୯୪୩ରେ ପ୍ରଥମ କମ୍ୟୁନିଷ୍ଟ ପାର୍ଟି ଗଠନ ଡ଼: ଓ: ସି: ର ପାଞ୍ଚଜଣ ମଧ୍ୟରେ ସାଥୀ ବେଣୁଗୋପାଳ ରାଓ ଅନ୍ୟତମ । ସହରରେ ଶଗଡ଼ିଆ ସଂଘ, ଗୁଆକଟାଳୀ ସଂଘ, ରାଜମିସ୍ତ୍ରୀ ସଂଘ, ତେଲ କଳ ଓ ଚାଉଳ କଳ ଶ୍ରମିକ ସଂଘ, ଟେଇଲର ସଂଘ ପ୍ରଭୃତିରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ୧୯୪୮ରେ ପାର୍ଟି ବେଆଇନ ହେବା ଯୋଗୁଁ ବହୁଦିନ କାରାବରଣ କରିଥିଲେ । ତାଙ୍କର ଶେଷ ଜୀବନରେ ସେ ସଶସ୍ତ୍ର ସଂଗ୍ରାମ ନହେଲେ ସର୍ବହରା ଶ୍ରେଣୀର ମୁକ୍ତି ହୋଇ ପାରେନା ବୋଲି ଆଦର୍ଶରେ ଅନୁପ୍ରାଣିତ ହୋଇ ନକ୍ସଲପନ୍ଥୀ ଚିନ୍ତାଧାରାରେ ବଶବର୍ତ୍ତୀ ହୋଇଥିଲେ । ସେ ଶେଷ ବୟସରେ ବ୍ରହ୍ମପୁର ଗୁଣ୍ଡି ଫୁଲବାଣୀରେ ବସବାସ କଲେ ଓ ସେଠାରେ ହିଁ ତାଙ୍କର ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ।

Digitized by srujanika@gmail.com

## କମ୍ରେଡ୍ ପି. ଚନ୍ଦ୍ର ରାଓ

କମ୍ରେଡ୍ ପି. ଚନ୍ଦ୍ର ରାଓ ଜଣେ ପ୍ରାଇଭେଟ ଡାକ୍ତର ଥିଲେ । ଚମାଖଣ୍ଡି ଅଞ୍ଚଳରେ ପାର୍ଟି ଗଠନରେ ତାଙ୍କର ବହୁତ ଅବଦାନ ରହିଛି । ୧୯୭୧ ଠାରୁ ସେ ପାର୍ଟିର ସଭ୍ୟ, ୧୯୭୫ରେ ଅଞ୍ଚଳ କମିଟିର ସହ ସମ୍ପାଦକ ଓ ଜିଲ୍ଲା ପରିଷଦର ସଭ୍ୟ ଥିଲେ । ପାର୍ଟିର ଅସୁବିଧା ସମୟରେ ସେ ସବୁବେଳେ ଆସି ସମ୍ମୁଖ ଭାଗରେ ରହି ଦାୟିତ୍ୱ ତୁଲାଉଥିଲେ । ୧୯୮୭ ମେ ୨୨ ତାରିଖରେ ତାଙ୍କର ବିୟୋଗ ହୋଇଥିଲା । ମୃତ୍ୟୁ ବେଳକୁ ତାଙ୍କୁ ୪୪ ବର୍ଷ ହୋଇଥିଲା ।

---

## ସାଥୀ ଜନାର୍ଦ୍ଦନ ସିଂ

ଆସିକା ସହରର ଏକ ଗରିବ ପରିବାରରେ ସାଥୀ ଜନାର୍ଦ୍ଦନ ସିଂ ୧୯୧୦ ମସିହାରେ ଜନ୍ମ । ସେ ଜମିଦାର, ମୁସ୍ତାଦାର ବିରୋଧୀ ସଂଗ୍ରାମରେ ଯୋଗଦେଇ ୧୯୪୮ରେ କମ୍ୟୁନିଷ୍ଟ ପାର୍ଟି ବେଆଇନ ହେବାରୁ ଦୁଇବର୍ଷ ବ୍ରହ୍ମପୁର ଓ ଅନ୍ୟାନ୍ୟ ଜେଲରେ ଅଟକ ଥିଲେ ଏବଂ ଆସିକା ସହରରେ ୧୯୭୫ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା ।

---

## ସାଥୀ କାଶିନାଥ ଗୌଡ଼

ଘୁମୁସର ତାଲୁକା ଡୋଲପିଟା ଗ୍ରାମରେ ସାଥୀ କାଶିନାଥ ଗୌଡ ଜନ୍ମ ଗ୍ରହଣ କରିଥିଲେ । ସେ ଧନୀ କୃଷୀ ପରିବାରରୁ ଆସିଥିଲେ ମଧ୍ୟ ଗରିବ, କୃଷକ, ମୂଲିଆ, ଆଦିବାସୀଙ୍କ ସ୍ୱାର୍ଥରକ୍ଷା ପାଇଁ ଲଢ଼େଇ କରୁଥିଲେ । ସେ ସାଥୀ ଗୋବିନ୍ଦ ପ୍ରଧାନ, ସାଥୀ ହରିହର ଦାଶଙ୍କ ସଂପର୍କରେ ଆସି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ଆସିକା କେନ୍ଦ୍ର ସମବାୟ ବ୍ୟାଙ୍କର ସେ ପ୍ରଥମ କମ୍ୟୁନିଷ୍ଟ ଡ଼ାଇରେକ୍ଟର ଭାବେ ନିର୍ବାଚିତ ହୋଇଥିଲେ । ଘୁମୁସର ଅଞ୍ଚଳର କୃଷକ ଆନ୍ଦୋଳନରେ ସେ ବହୁଦିନ ଧରି ନେତୃତ୍ୱ ନେଇଥିଲେ ।

---

## ସାଥୀ କହ୍ନ ଚୌଧୁରୀ

ଆସିକା ଟାଉନର ଏକ ହରିଜନ ପରିବାରରେ ୧୯୪୦ ମସିହାରେ ସାଥୀ କହ୍ନ ଚୌଧୁରୀଙ୍କ ଜନ୍ମ । ସେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇ କୃଷୀ, ମୂଲିଆ, ହରିଜନଙ୍କୁ ସଂଗଠିତ କରି ସେମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଅହରହ ଲଢ଼େଇ କରୁଥିଲେ । ସେ ଆସିକା ପଞ୍ଚାୟତ ୟୁନିୟନ (ବର୍ତ୍ତମାନର ଏନ୍.ଏ.ସି.)ର ଚେୟାରମେନ ଭାବେ ୫ ବର୍ଷ କାର୍ଯ୍ୟ ଚଳାଇଥିଲେ ଏବଂ ୧୯୭୫ ସାଲରେ ଆସିକାରେ ହିଁ ତାଙ୍କର ମୃତ୍ୟୁ ହୋଇଥିଲା । ସେ ମୃତ୍ୟୁ ପର୍ଯ୍ୟନ୍ତ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ ।

---

## ସାଥୀ ଡ. ଗୋରେୟା

ଆସିକା ନିକଟସ୍ଥ ଗଣ୍ଡ୍ରପଲ୍ଲୀ ଗ୍ରାମରେ ଏକ ମୋଚି ପରିବାରରେ ୧୯୧୦ ସାଲରେ ଜନ୍ମ । ସେ ଗରିବ ମେହନତି ଲୋକଙ୍କୁ ସଂଗଠିତ କରି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ସାଥୀ ଡ. ଗୋରେୟା ୧୯୭୦ ମସିହାରେ ମୃତ୍ୟୁ ପର୍ଯ୍ୟନ୍ତ ପାର୍ଟି ନିଷ୍ଠ, ନିୟମ ମାନ ଶୃଙ୍ଖଳିତ ସଭ୍ୟ ଥିଲେ ।

Digitized by srujanika@gmail.com

## କମ୍ରେଡ୍ ଗୋଲ୍ ପ୍ରଧାନ

ସାଥୀ ଗୋଲ୍ ପ୍ରଧାନ ଗୋବିନ୍ଦପୁର ତଥା ଶେରଗଡ ଅଞ୍ଚଳର ଜଣେ ଜନପ୍ରିୟ କମ୍ୟୁନିଷ୍ଟ ନେତା ଥିଲେ । ସେ ଗୋବିନ୍ଦପୁର ପଞ୍ଚାୟତର ସରପଞ୍ଚ ଭାବେ ବହୁ ଜନହିତକର କାର୍ଯ୍ୟ କରିଥିଲେ । ୧୯୮୭ ଅକ୍ଟୋବର ୨୫ ତାରିଖରେ ତାଙ୍କର ଅକାଳ ବିୟୋଗ ଘଟିଲା ।

---

## ସାଥୀ ଭୋଳାନାଥ ଯେନା

ପାରଳାଖେମୁଣ୍ଡି ତାଲୁକା - ଆଜିର ଗଜପତି ଜିଲ୍ଲାର ଗୁରଣ୍ଡି ଏକ ବଡ଼ ଗାଁ । ସେଇ ଗାଁରେ ସବୁ ରାଜନୈତିକ ଦଳର ଆଡ୍‌ଡ଼ାସ୍ଥଳୀ । ବହୁ କର୍ମୀ ଓ ବହୁ ନେତା ସେଠାରେ । ସେଇ ଗାଁରେ ଏକ ଉଚ୍ଚ ମଧ୍ୟବିତ୍ତ ପରିବାରରେ ସାଥୀ ଭୋଳାନାଥ ଯେନାଙ୍କ ଜନ୍ମ । ସେ ମାର୍କସ୍‌ବାଦୀ-ଲେନିନ୍‌ବାଦ ପ୍ରତି ଆକୃଷ୍ଟ ହୋଇ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । କମ୍ୟୁନିଷ୍ଟ ନେତା ସାଥୀ ବିଜୟ ଚନ୍ଦ୍ର ଦାସଙ୍କ ପରାମର୍ଶ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଭୋଳାନାଥ ବାବୁ କମ୍ୟୁନିଷ୍ଟ ସଭ୍ୟ ହୋଇ ଜନ ଆନ୍ଦୋଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ସାଥୀ ନାରାୟଣ ପାଣି, ସାଥୀ ଆପନା ପାତ୍ର ପ୍ରମୁଖଙ୍କୁ ନେଇ କମିଟି ଗଠନ ହେଲା । ପରେ ସାଥୀ ଜଗନ୍ନାଥ ମିଶ୍ର ଯୋଗ ଦେଇଥିଲେ । ଗଞ୍ଜାମ ଜିଲ୍ଲା କମ୍ୟୁନିଷ୍ଟ ପାର୍ଟି ଗଠନ ବେଳେ ସେ ପାର୍ଟିର ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ତାଙ୍କର ବଳିଷ୍ଠ ନେତୃତ୍ୱ ଫଳରେ ୧୯୫୨ ସାବାଳକ ପ୍ରଥମ ସାଧାରଣ ନିର୍ବାଚନରେ ବିଧାନସଭା ଲାଗି ସାଥୀ ଜଗନ୍ନାଥ ମିଶ୍ର ଓ ଲୋକସଭା ପାଇଁ ସାଥୀ ବିଜୟ ଚନ୍ଦ୍ର ଦାସ ନିର୍ବାଚିତ ହୋଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଶେଷ ଜୀବନ ଯାଏ ସେ ସି.ପି.ଆଇ. ର ଦରଦୀ ବନ୍ଧୁ ଥିଲେ । ୧୯୬୪ରେ ପାର୍ଟି ବିଭାଜନ ତାଙ୍କୁ ବିଶେଷ ବିଚଳିତ ଓ ବ୍ୟଥିତ କରିଥିଲା । ଏଣୁ ସେ ତା'ପରେ ପାର୍ଟିର ସଭ୍ୟ ନ ହୋଇ ବନ୍ଧୁ ହିସାବରେ ରହିଥିଲେ ।

---

## କମ୍ରେଡ୍ ଏସ୍. କେ. ବାବୁନ୍

ସାଥୀ ଏସ୍. କେ. ବାବୁନ୍ ରସୁଲକୋଣ୍ଡା ବର୍ତ୍ତମାନର ଭଞ୍ଜନଗର ଟାଉନର ଏକ ଗରିବ ପରିବାରରେ ଜନ୍ମ । ସେ ବିଶେଷ ଶିକ୍ଷା ଦୀକ୍ଷା ଲାଭ କରିନଥିଲେ ମଧ୍ୟ ବଡ଼ ନିଷ୍ଠାବାନ କର୍ମୀ ଥିଲେ । ବ୍ରିଟିଶ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ କରିବା, ଦେଶକୁ ସ୍ୱାଧୀନ କରିବା ତାଙ୍କର ଏଇ ସନ୍ତ୍ରାଶବାଦ ଚିନ୍ତାଧାରା ଥାଏ । କିନ୍ତୁ ଦେଶକୁ ସ୍ୱାଧୀନ କରି ଗରିବ ଗୁରୁବାଙ୍କ ପେଟ ବଞ୍ଚିବାକୁ ହେଲେ କମ୍ୟୁନିଷ୍ଟ ପାର୍ଟି ପ୍ରଦର୍ଶିତ ପନ୍ଥା ହିଁ ଉଚିତ୍ ମାର୍ଗ ବୋଲି ୫୦ ଦଶକ ଆରମ୍ଭରେ ପାର୍ଟିରେ ଯୋଗଦେଲେ । ଘୁମୁସର ଅଞ୍ଚଳର ବହୁ ଗଣ ଆନ୍ଦୋଳନରେ ଭାଗ ନେଲେ । ସେ ଜଣେ ନିଷ୍ଠାବାନ ଓ ନିର୍ଭୀକ ପାର୍ଟି ସାଥୀ ଥିଲେ ।

Digitized by srujanika@gmail.com

# ଶ୍ରୀଯୁକ୍ତ ୱାଇ. ସନ୍ନ୍ୟାସୀ ରାଓ

ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଆଇନଜ୍ଞ ଓ ଯୋଗ୍ୟ ପ୍ରଗତିଶୀଳ ସନ୍ତାନ ଶ୍ରୀଯୁକ୍ତ ୱାଇ. ସନ୍ନ୍ୟାସୀ ରାଓଙ୍କ ୧୯୮୩ ଡିସେମ୍ବର ପହିଲାରେ ବିୟୋଗ ଘଟିଲା । ମୃତ୍ୟୁ ବେଳକୁ ତାଙ୍କୁ ୭୦ ବର୍ଷ ବୟସ ହୋଇଥିଲା ।

ୱାଇ. ସନ୍ନ୍ୟାସୀ ରାଓ ଅଖିଳ ଭାରତ ଛାତ୍ର ସଂଘର ଉଦ୍ୟୋକ୍ତା ଭାବେ ଗଞ୍ଜାମ ଜିଲ୍ଲାରେ ଗଣତାନ୍ତ୍ରିକ ଛାତ୍ର ଆନ୍ଦୋଳନ ଗଢ଼ି ତୋଳିବାରେ ଏବଂ ସାମ୍ରାଜ୍ୟବାଦ ବିରୋଧି ଭାରତର ସ୍ୱାଧୀନତା ଆନ୍ଦୋଳନରେ ଛାତ୍ର ସମାଜକୁ ନେତୃତ୍ୱ ଦେବାରେ ଅଗ୍ରଣୀ ଥିଲେ । ସେ ବିଜୟ ଚନ୍ଦ୍ର ଦାସଙ୍କ ସହକର୍ମୀ ଭାବେ ତାଂକ କର୍ମମୟ ଜୀବନର ଆରମ୍ଭ ବେଳେ କମ୍ୟୁନିଷ୍ଟ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜଣେ ସଚ୍ଚା ବନ୍ଧୁ ଓ ଦରଦୀ ସମର୍ଥକ ରହି ଆସିଥିଲେ ।

୧୯୪୮-୪୯ ରେ କମ୍ୟୁନିଷ୍ଟ କର୍ମୀଙ୍କ ବିରୁଦ୍ଧରେ ହୋଇଥିବା ଶତାଧିକ ମିଥ୍ୟା ମକଦ୍ଦମାରେ କମ୍ୟୁନିଷ୍ଟମାନଙ୍କ ପକ୍ଷନେଇ ପୋଲିସ ଅଭିଯୋଗକୁ ମିଥ୍ୟା ପ୍ରମାଣିତ କରିଥିଲେ । ସେହିପରି ଜମିଦାରୀ ବିରୋଧି ଆନ୍ଦୋଳନ ବେଳେ ଗରିବ ଚାଷୀ ଓ ଭାଗଚାଷୀଙ୍କ ଅଧିକାର ହାସଲ ଦିଗରେ ଅତୁଳନୀୟ ଆଇନଗତ ସାହାଯ୍ୟ କରିଛନ୍ତି । ବିଭିନ୍ନ ସମୟରେ ଅସାମାଜିକ ଗୁଣ୍ଡା, ପୋଲିସ ଓ ସରକାରୀ ଦଳ ଚଳାଇ ଆସିଥିବା ମିଥ୍ୟା ମକଦ୍ଦମା ମାନଂକରେ ଲିପ୍ତ କମ୍ୟୁନିଷ୍ଟ କର୍ମୀ ଓ ନେତାଙ୍କୁ ନିର୍ଦ୍ଦୋଷ ପ୍ରମାଣିତ କରିଛନ୍ତି ।

ଓଡ଼ିଶାର ଗଣତାନ୍ତ୍ରିକ ଓକିଲ ସଂଘର ସେ ଜଣେ ଅନ୍ୟତମ ପୁରୋଧା ଥିଲେ । ଭାରତ-ସୋଭିଏତ୍ ମୈତ୍ରୀ ସଂଘ, ଶାନ୍ତି ଓ ସଂହତି ପରିଷଦ ପ୍ରଭୃତିରେ ମଧ୍ୟ ସେ ସକ୍ରିୟ ଭାବେ ଯୋଗ ଦେଇଥିଲେ । ବ୍ରହ୍ମପୁର ପୌରସଭାର ପୂର୍ବତନ କାଉନ୍ସିଲର ଭାବେ ଏବଂ ଜଣେ ନିସ୍ୱାର୍ଥପର ସମାଜସେବୀ ଭାବେ ବ୍ରହ୍ମପୁରର ନାଗରିକ ଜୀବନରେ ସେ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭଗ୍ନ ସ୍ୱାସ୍ଥ୍ୟ ସତ୍ତ୍ୱେ ସେବା ମନୋଭାବ ନେଇ କାର୍ଯ୍ୟ କରିଥିଲେ ।

---

# କମ୍ରେଡ୍ ନିତ୍ୟାନନ୍ଦ ମହାନ୍ତି

ହିଞ୍ଜିଳିର ଆଲୁପୁରରେ ସାଥୀ ନିତ୍ୟାନନ୍ଦ ମହାନ୍ତିଙ୍କର ଏକ ମଧ୍ୟବିତ୍ତ ପରିବାରରେ ଜନ୍ମ । ଗଞ୍ଜାମ ଜିଲ୍ଲାରେ ସ୍ୱାଧୀନତା ପ୍ରାକ୍କାଳ ଓ ପରବର୍ତ୍ତୀ ପଚାଶ ଦଶକରେ ଐତିହାସିକ ରୟତ ଆନ୍ଦୋଳନ ଜମିଦାରୀ ଇଲାକାଗୁଡିକରେ ଫାଟି ପଡୁଥାଏ । ମୁସ୍ତାଦାରୀ, ଇନାମଦାରୀ, ଜମିଦାରୀ ପ୍ରଥା ବିରୁଦ୍ଧରେ ଆନ୍ଦୋଳନରେ ପ୍ରଖରତା ଓ ଛାତ୍ର ଆନ୍ଦୋଳନ ବହୁ ମଧ୍ୟବିତ୍ତ ଯୁବକଙ୍କୁ କମ୍ୟୁନିଷ୍ଟ ପାର୍ଟି ପ୍ରତି ଆକୃଷ୍ଟ କରିଥିଲା । ସାଥୀ ନିତ୍ୟାନନ୍ଦ ତନ୍ମଧ୍ୟରୁ ଅନ୍ୟତମ । ସ୍ୱଳ୍ପ ଆୟ, ପାରିବାରିକ ଜଞ୍ଜାଳ । ଏ ସମସ୍ତ ତାଙ୍କୁ ତାଙ୍କ ମନୋନୀତ ପଥରୁ ଅପସରେଇ ନେଇ ନଥିଲା ।

ସେତେବେଳେ କ୍ଷମତା ଦର୍ପରେ ଦର୍ପୀ ମହତାବଙ୍କ କଂଗ୍ରେସ ସରକାର । ୧୯୪୯-୫୨ ଯାଏ ଖାଲି ଗଞ୍ଜାମର କମ୍ୟୁନିଷ୍ଟ ପାର୍ଟି ନୁହଁ, ଗଞ୍ଜାମ ରୟତକୁଳ ଉପରେ କଂଗ୍ରେସ ପୋଲିସର ସନ୍ତ୍ରାସ । ଡାକରଡାରେ ଗୁଳି ଓ ୧୨ ବର୍ଷର ହେମ ସହ ୬ ଜଣଙ୍କର ହତ୍ୟା ଶହ ଶହ ଗିରଫ । ଦୋଷ ସେମାନେ ମୁସ୍ତାଦାରୀ ପ୍ରଥା ବିରୁଦ୍ଧରେ ଜମିଦାର ଅତ୍ୟାଚାର ବିରୁଦ୍ଧରେ ।

କମ୍ୟୁନିଷ୍ଟ ନେତାଙ୍କୁ ଆତ୍ମଗୋପନ କରିବାକୁ ପଡ଼ିଲା ଏବଂ ଜେଲଖାନାରେ ନିକ୍ଷେପ କରାଗଲା । ବାହାରେ ଜିଲ୍ଲା ପାର୍ଟିକୁ ନେତୃତ୍ୱ ନେବାକୁ ବସ୍ତୁତ କେହି ନଥିଲେ ।

ସଂଗ୍ରାମୀ ବିପ୍ଳବ ପାର୍ଟିର ଏହି ଅଗ୍ନିପରୀକ୍ଷା ବେଳେ ସାଥୀ ନିତ୍ୟାନନ୍ଦ ପୋଲିସ ପଞ୍ଝତରକୁ ଏଡ଼ି ଗଞ୍ଜାମ ପାର୍ଟିର ସମ୍ପାଦକତ୍ୱର ଦାୟିତ୍ୱ ବହନ କଲେ । ପାର୍ଟିକୁ ପୁନଃ ସଙ୍ଗଠିତ କଲେ ଓ ରକ୍ଷା କରିବା ପାଇଁ ସାଧ୍ୟମତେ ଉଦ୍ୟମ ଚଳାଇଲେ । ସେହି କାଳରୁ ମୃତ୍ୟୁ ପର୍ଯ୍ୟନ୍ତ, ପାରିବାରିକ ଅଭାବ ଅନାଟନ ସତ୍ତ୍ୱେ କମ୍ୟୁନିଷ୍ଟ ପାର୍ଟିରେ ସେ ସକ୍ରିୟ ରହି ଆସିଥିଲେ । ତାଙ୍କ ସାନ ଭାଇ ସାଥୀ ସଦାନନ୍ଦ ମହାନ୍ତି । ପରିବାରର ଅନେକଙ୍କୁ ସି. ପି. ଆଇ. ରେ ସାମିଲ କରାଇବାରେ ସାଥୀ ନିତ୍ୟାନନ୍ଦଙ୍କ ପ୍ରେରଣା ରହିଛି । ଏପରି ଜଣେ ସାଥୀଙ୍କୁ ହରାଇବା ଫଳରେ ଗଞ୍ଜାମ ଜିଲ୍ଲା ପାର୍ଟିର ତଥା ରାଜ୍ୟ ପାର୍ଟିର ଅଶେଷ କ୍ଷତି ହେଲା ।

Digitized by srujanika@gmail.com

